ଫସିଲ୍ (ଉପନ୍ୟାସ)

ଲେଖିକ : ଭୂପେନ୍ ମହାପାତ୍ର

▪ ପ୍ରକାଶକ - ବିତରକ: ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର-୧୨ ▪ ପ୍ରଚ୍ଛଦ : ଅଶୋକ ମହାନ୍ତି ▪ ମୁଦ୍ରଣ : ଡୁଡୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର ▪ ପ୍ରଥମ ପ୍ରକାଶ କାଳ : ୨୦୦୭

ମୂଲ୍ୟ : ୩୦.୦୦

# ପ୍ରାକ୍ କଥନ

'ଫସିଲ୍'ର ପରିକଳ୍ପନା ଥିଲା କିଛି ବର୍ଷ ତଳର। ଗୁଡ଼ିଏ ବାସ୍ତବ ଚିତ୍ର ମୋ' ମନକୁ ଏପରି ଭାବରେ ସେତେବେଳେ ବ୍ୟସ୍ତବିବ୍ରତ କରିଥିଲା ଯେ, ମୁଁ ସେସବୁ ଯୋଡ଼ାଯୋଡ଼ି କରି ବଡ଼ଗଳ୍ପଟିଏ ଲେଖିବି ନା ଉପନ୍ୟାସ ଲେଖିବି ଠିକ୍ କରି ପାରୁନଥିଲି। ପ୍ରାୟ ଦୁଇବର୍ଷ ଯାଏଁ ମୁଁ ସେଥିରେ ଘାଣ୍ଟିହେଲି। ବାସ୍ତବାଦୀ ଚିତ୍ର ହିଁ ସବୁବେଳେ ସୃଜନଶୀଳତାକୁ ଖୋରକ ଯୋଗାଏ। ସମାଜର ଚିତ୍ର ପୁଣି ସାହିତ୍ୟ ହେଇ ସମାଜକୁ ଫେରିଯାଏ। ଆକାଶ ପାଣି ଆକାଶକୁ ଯାଏ।

ଗତ କିଛିବର୍ଷ ଭିତରେ ଓଡ଼ିଆରେ ଉପନ୍ୟାସର ସଂଖ୍ୟା ବୃଦ୍ଧିପାଇଛି। 'ପ୍ରାୟୋଗପନ୍ୟାସ'ର ଧାରା ଓଡ଼ିଆ ସାହିତ୍ୟକୁ ଆସିବା ପରଠାରୁ ତାକୁ ଅନୁସରଣ କରାଯାଇଥିବ। ମୋର ମନେହୁଏ ତା'ର ଆଦର ବଢୁଛି। ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଆଦର କମୁଥିବାର ଅଭିଯୋଗର ସ୍ୱର ଦିନକୁଦିନ ସ୍ପଷ୍ଟ ହେଉଥିବା

ବେଳେ ଉପନ୍ୟାସର ଆଦର ବଢ଼ିବା ଶୁଭ ଲକ୍ଷଣ ନିଶ୍ଚୟ। ଏଇ ପ୍ରକାର ଏକ ସମୟରେ 'ଫସିଲ୍'ର ଜନ୍ମ ପ୍ରିୟ ବନ୍ଧୁ ନବକିଶୋର ରାଜ୍‌ଙ୍କ ପ୍ରେରଣାରେ। ସେ ବାରମ୍ବାର ଚିଠି ଲେଖି ନ ଥିଲେ ବୋଧେ ଏହା ସମ୍ଭବ ହୋଇପାରିନଥା'ନ୍ତା। ମୁଁ ତାଙ୍କଠାରେ କୃତଜ୍ଞ।

ଉପନ୍ୟାସ ଲେଖିବା ମୋ' ପକ୍ଷେ ଯେ କେତେ ଯନ୍ତ୍ରଣାଦାୟକ ସେ କଥା ମୁଁ ମୋର ପ୍ରଥମ ଉପନ୍ୟାସ 'ପ୍ରଥମ ପୃଥିବୀ' ଲେଖିଲା ବେଳେ ବୁଝିପାରିଥିଲି। ତେବେ ଗୋଟିଏ କ୍ଷୁଦ୍ର ପରିସର ଭିତରେ 'ଫସିଲ୍'କୁ ରୂପ ଦେବାକୁ କଷ୍ଟ ହେଲା ନାହିଁ। ପ୍ରକାଶ ପାଇଲା 'ଆଇନା' ୨୦୦୫ ପୂଜା ସଂଖ୍ୟାରେ। ତା'ପରେ ଚିଠି ଆସିବାକୁ ଲାଗିଲା। ବେଶ୍ କିଛି ପାଠକୀୟ ମତାମତ ମୋତେ ଉତ୍ସାହିତ କଲା। କେତେକ ଜାଗାରେ ଟିକେ ଦୁର୍ବୋଧ୍ୟ ହେଲା ବୋଲି ମଧ୍ୟ କିଛି ଅଭିଯୋଗ ଆସିଲା। ଗଳ୍ପ ଉପନ୍ୟାସ ହେଲେ ମଧ୍ୟ ସେଥିରେ ସବୁକଥା ସିଧା କହି ନ ପାରିଲେ ଟିକିଏ ବଙ୍କେଇବାକୁ ହୁଏ। ଗୋଟାଏ ଧାରଣା ସୃଷ୍ଟି କରିବାକୁ ଆଉ ଗୋଟାଏ କଥାରେ ଅବତାରଣା କରିବାକୁ ହୁଏ। ସବୁ ସାହିତ୍ୟରେ ଏହା ପ୍ରଚଳିତ। ମୁଁ ତେଣୁ ସବୁ ପାଠକୀୟ ମତାମତକୁ ସମ୍ମାନ ଦେଇ 'ଫସିଲ୍'ର କଳେବର ସାମାନ୍ୟ ବୃଦ୍ଧି କଲି। ତଥାପି ସବୁ ଚିତ୍ରକୁ ସ୍ଥାନିତ କରିପାରିଲି ନାହିଁ। ଏକାଥରେ ଆରମ୍ଭ କରି ଶେଷରେ ପହଞ୍ଚିବା ଏବଂ ମଝିରେ ମଝିରେ ଯୋଡ଼ାଯୋଡ଼ି କରିବା ଏକା କଥା ନୁହେଁ। ତା'ର ଯନ୍ତ୍ରଣା ସହିତ ମୋତେ ସାଲିସ କରିବାକୁ ପଡ଼ିଲା। କିନ୍ତୁ ତା' ଭିତରେ ମୋର ଶ୍ରଦ୍ଧାଶୀଳ ଅନୁଭବଟି ମୋତେ ଆମୋଦିତ କଲା। ମୋ' ମୁଣ୍ଡରୁ ବୋଝ ଓହ୍ଲେଇଗଲା।

ପ୍ରକାଶନର ଦାୟିତ୍ୱ ନେଲେ 'ପଶ୍ଚିମା ପବ୍ଲିକେଶନ'ର ବନ୍ଧୁ ଅଶୋକ ମହାନ୍ତି। ପ୍ରଚ୍ଛଦ ପରିକଳ୍ପନା ମଧ୍ୟ ତାଙ୍କର। ମୁଁ ନିଶ୍ଚିନ୍ତ ହୋଇଗଲି ତା'ପରେ। କାମଟିକୁ ଅତି ସହଜ ଓ ସରଳ କରି ଦେଇଥିବାରୁ ସେ ଧନ୍ୟବାଦାର୍ହ।

*ଭୂପେନ୍ ମହାପାତ୍ର*

# ଫସିଲ୍

ସୁବ୍ରତବାବୁ ସେଦିନ ଗାଧୋଇ ଆସି ପୂଜା ପାଇଁ ତାଙ୍କର ସେ ମଠା ଧୋତି ପିନ୍ଧି ଠାକୁରଘରକୁ ପଶିଲା ବେଳକୁ କେହି ଜଣେ ଦାଣ୍ଡପିଣ୍ଡାରେ ଠିଆ ହୋଇ ଥିବାର ଦେଖି ପାଟି କରି ଡାକିଲେ କିଏ କିରେ ?

ଆଜ୍ଞା ମୁଁ ନରି - ପୋଷ୍ଟ ଅଫିସ୍ ଯାଇଥିଲି ଯେ, ଆପଣଙ୍କର ଖଣ୍ଡେ ଚିଠି- ଦେଇ ଦେଇଗଲି । ମୋର କାମ ଅଛି । ମୁଁ ଯାଉଚି ।

ଲୋକଟା ସେ ପିଣ୍ଡାରେ ଚିଠିଟା ପକେଇ ଦେଇ ଚାଲିଗଲା ।

ସୁବ୍ରତବାବୁ ବାଧ ହୋଇ ଗଲେ ବାହାରକୁ । ଟିକ୍ ଟିକ୍ କରୁଥିବା ପିତଳ ନୋଟାଟାକୁ ସେମିତି

ହାତରେ ଧରି ମନ୍ତ୍ରୋଚ୍ଚରଣ କରୁ କରୁ ବାଁ ହାତରେ ଚିଠି, ଖଣ୍ଡେ ଖବରକାଗଜ ଉଠେଇ ଆଣି ଭିତର ଘର ଟେବୁଲ ଉପରେ ଶୋଇ ପୁଣି ପୂଜାଘରକୁ ଚାଲିଗଲେ । ଏଇନେ ଦେଖିବାକୁ ବେଳ ନାହିଁ ।

କିଏ ଚିଠି ଦେଉଚି ? ରୋଷେଇଘରୁ ବାହାରକୁ ଆସି ପଚାରିଲେ ତନୁଜା ।

ମୁଁ ଦେଖିନି କିଏ ଦେଇଚି । ସୁବ୍ରତବାବୁ ଭିତରେ ଠିଆ ହେଇ କହିଲେ । ତୁମେ ନିଜେ ଦେଖ । ମୋତେ ଆଉ ଡିଷ୍ଟର୍ବ କରନା । ମୋର ଡେରି ହେଇଗଲାଣି । ସେ ପୂଜାରେ ବସିଗଲେ । ସୁବ୍ରତ ଥରେ ପୂଜାରେ ବସିଗଲେ ଘଣ୍ଟେ କାଳ ଆଉ କାହା ସହିତ କଥାବାର୍ତ୍ତା କରନ୍ତି ନାହିଁ । ସାମାନ୍ୟ କେହି କିଛି ପଚାରିଦେଲେ ମଧ ସେ ସହ୍ୟ କରନ୍ତି ନାହିଁ । ସେତେବେଳେ ସିନା କିଛି କହନ୍ତି ନାହିଁ । କିନ୍ତୁ ପରେ ସେ ତା'ର ଚଉଦପୁରୁଷକୁ ଶ୍ରାଦ୍ଧ କରି ଦିଅନ୍ତି ।

ତନୁଜା ସେଥିପ୍ରତି ସତର୍କ ଥାଆନ୍ତି । ଚାକିରିରୁ ଅବସର ନେଲା ପରଠାରୁ ସୁବ୍ରତ ବାବୁଙ୍କର ଏଇ ନୂଆ ରୋଗକୁ ସେ ଜାଣିଥାଆନ୍ତି । ପ୍ରଥମେ ପ୍ରଥମେ ତାଙ୍କୁ ମଧ ଅସୁବିଧା ହେଉଥିଲା । ପରେ ଅଭ୍ୟାସରେ ପଡ଼ିଗଲେ । ସେ ଅନେକଥର ମନେମନେ ଭାବନ୍ତି ପୁରୁଷଗୁଡ଼ିକ କେତେ ଅବାଗିଆ ମଣିଷ । ଚାକିରି କାଳ ଭିତରେ ସେ ଯେତେ ବାଗକୁ ଆଣିବା ପାଇଁ ସୁବ୍ରତବାବୁଙ୍କୁ ଶିଖେଇଲେ, ଉପଦେଶ ଦେଲେ, ସେ ମୋଟେ ଶୁଣିଲେ ନାହିଁ । କହିଲେ ତୁମେ ତ କରୁଚ, ମୁଁ ଆଉ କେତେବେଳେ ଓ କଅଣ ପାଇଁ କରିବି ? ଜଣେ କଲେ ଠାକୁର ସନ୍ତୁଷ୍ଟ ହେବେନି ? ସେଇ ସୁବ୍ରତ ଆଜି ଦିନକୁ ଘଣ୍ଟାଏ କଠୋର ତପସ୍ୟାରେ ମଗ୍ନ ହେଇ ଯାଉଛନ୍ତି । ଚିଠି ଖଣ୍ଡେ କୋଉଠୁ ଆସିଚି ଦେଖିବାକୁ ମଧ ଇଚ୍ଛା କରୁ ନାହାନ୍ତି । ଝିଅ କି ନାତିନାତୁଣୀମାନେ କି ଆଉ କେହି ବନ୍ଧୁବାନ୍ଧବଙ୍କ ଠାରୁ ଆସି ଥାଇପାରେ । କିଛି ଜରୁରୀ ବି ଥାଇପାରେ ।

ଅବଶ୍ୟ ଆଜିକାଲି ଝିଅ ଜୋଇଁ କି ନାତିନାତୁଣୀ ଚିଠି ଦେଉ ନାହାନ୍ତି । ନାତି ନାତୁଣୀ ତ ଓଡ଼ିଆ ଜାଣନ୍ତି ନି । ତେଣୁ ସେମାନେ ଲେଖିଥିଲେ ମଧ ତନୁଜା ପଢ଼ିପାରନ୍ତିନି । ଝିଅ ଜୋଇଁ ମଧ ଚାରି ଛଅ ଦିନରେ ଥରେ ଫୋନ୍‌ରେ କଥା ହେଇଯାଆନ୍ତି । ସେଥିରେ ମଧ ଗାଁର ଟେଲିଫୋନ୍ । ମାସରେ ପନ୍ଦର ଦିନ ଠିକ୍ ଥିଲେ ବାକି ସମୟତକ ଡେଡ୍ । କମ୍ପ୍ଲେନ୍ କେହି କରନ୍ତି ନାହିଁ କି ଶୁଣିବାକୁ ମଧ କେହି ନାହିଁ । ଗାଁର କଥା କିଏ ଶୁଣେ ?

ତନୁଜା ମାଛ ବାଛୁ ଥିଲେ । ଇଲିଶି ମାଛ । ନଈରୁ ଧରାହେଇ ବେଳେ ବେଳେ ଗାଁରେ ବିକ୍ରି ହୁଏ । ଗାଁରେ ବିକ୍ରି ହେଇ ନପାରିଲେ, ଦର ନ ପଟିଲେ, ଯାଏ ହାଟକୁ । କେବେ ହାଟକୁ ଯିବା ଅନେକ କମ୍ । ତନୁଜା କେଉଟମାନଙ୍କୁ କହି ଦେଇ ଥାଆନ୍ତି, ଇଲିଶି ପଡ଼ିଲେ ମୋତେ ନିଶ୍ଚୟ ଦେବୁ ।

ସେଇ ଇଲିସିକୁ ଠିକ୍ ଭାବେ ନ ଭାଜିଲେ ଖାଇଲା ବେଳେ ମଜା ଉଠେ ନାହିଁ । ଖାସ ମାଛ ଭାଜିବା ପାଇଁ ସେ ସ୍ୱତନ୍ତ୍ର ଭାବେ ଗଣେଶ ମାର୍କା ଶୋରିଷ ତେଲ ଟିଣ ମଗାଇ ଥାଆନ୍ତି । ଚାମଚରେ ଟିକେ ଟିକେ ତେଲ ପଡ଼େ । ଅଳ୍ପ ଜାଳରେ ମାଛଭଜା ଯାଏ । ସେ ଦୁଇ ଝିଅଙ୍କୁ ମାଛଭଜା ଶିଖାଉ ଥିଲା ବେଳେ କହନ୍ତି ମାଛ ଭାଜିବା ଏକ ସ୍ୱତନ୍ତ୍ର କଳା । ତାକୁ ଖାଲି ଶିଖିବା ନୁହେଁ ଆୟତ୍ତ କରିବାକୁ ପଡ଼େ ।

ବଟାରେ ଚେଁ ଚେଁ କରୁଥିବା ମାଛକୁ ଛାଡ଼ି ତନୁଜା ଚିଠିଟାକୁ ଦେଖିବାକୁ ଯିବେ କି ନା ଭାବି ପୁଣି ଚୁଲି ପାଖକୁ ଫେରି ଆସିଲେ । ଗ୍ୟାସ୍‌କୁ ଏକଦମ୍ କମେଇ ଦେଇ ସେ ଦଉଡ଼ି ଗଲେ ।

ଚିଠିଟା ଆମେରିକାରୁ ପୁଅ ପାଖରୁ ଆସିଚି କି ଆଉ ? ଟଙ୍କା ପଠେଇଚି କି ? କହିଥିଲା ମୋ ପାଖକୁ ସ୍ୱତନ୍ତ୍ର ଭାବରେ ପଠେଇବ । ସବୁଯାକ ଗହଣା ପୁରୁଣା ହୋଇ ଗଲାଣି । ତାକୁ ଭାଙ୍ଗି ବଦଳେଇବା ନିହାତି ଦରକାର । ତନୁଜା ଏ କଥା ମଧ୍ୟ ପୁଅକୁ କହିଥିଲେ । ଗତ ଦୁଇ ବର୍ଷ ଭିତରେ ତୋ' ବାପା ଖଣ୍ଡେ ବୋଲି ଭଲ ଶାଢ଼ି ମୋତେ ଆଣି ଦେଇ ନାହାନ୍ତି । ଡ୍ରାଫ୍ଟ ସେଥିପାଇଁ ମଧ୍ୟ ଆସିଥାଇପାରେ । ଗହଣା ପ୍ରତି ତନୁଜାଙ୍କ ଲୋଭ ପ୍ରବଳ । ଏଇଟା ଅବଶ୍ୟ ନାରୀମାନଙ୍କର ସହଜାତ ପ୍ରବୃତ୍ତି । ଶାଢ଼ି ଓ ଗହଣା ଦେଖିଲେ କୁଇନ୍ ଭିକ୍ଟୋରିଆ କୁଆଡ଼େ ପାଗଳ ହେଇ ଯାଉଥିଲେ ବୋଲି ସୁବ୍ରତବାବୁ ଅନେକ ସମୟରେ ସ୍ତ୍ରୀଙ୍କୁ ଥଟ୍ଟା କରିବା ପାଇଁ କହନ୍ତି । ସୁନ୍ଦର ଗପଟାଏ ସେ ଯୋଡ଼ି ଦିଅନ୍ତି ।

କୁଇନ୍ ଭିକ୍ଟୋରିଆ ଇଣ୍ଡିଆନ୍ ଶାଢ଼ି ଓ ଗହଣାକୁ ଏତେ ଭଲ ପାଉଥିଲେ ଯେ ସେ ବାରମ୍ବାର ତାଙ୍କ ସ୍ୱାମୀଙ୍କୁ ଇଣ୍ଡିଆରୁ ସୁନ୍ଦରତମ ଶାଢ଼ି ଓ ଗହଣା ମଗେଇବାକୁ କହନ୍ତି । ରାଜା କିନ୍ତୁ ସେ କଥା ମୋଟେ ଶୁଣନ୍ତି ନାହିଁ । ଏ କାନରୁ ନେଇ ସେ କାନରେ ବାହାର କରି ଦିଅନ୍ତି । ରାଣୀ ଯେତେବେଳେ ପୁଣିଥରେ ତାଙ୍କୁ ଏ କଥା କହିଲେ ରାଜା ବିରକ୍ତ ହେଇ କହିଲେ ତୁମେ ସେ ଶାଢ଼ି ଓ ଗହଣା ପିନ୍ଧିଲେ କେମିତି ଦେଖାଯିବ ? ସେ ଛବିଟା ମୋତେ ଭଲ ଦେଖାଯିବ ତ ?

ରାଣୀ ବିଗିଡ଼ି ଗଲେ । କହିଲେ, ନାରୀ ନିଜକୁ ସଜେଇ ହେବାରେ ଆନନ୍ଦ ପାଏ । ଅନ୍ୟର ଆଖିକୁ ସୁନ୍ଦର ଦେଖାଯିବ କି ନାହିଁ ସେ କଥା ସେ ଚିନ୍ତା କରେ ନାହିଁ ।

ରାଜାଙ୍କ ପାଟି ଚୁପ୍ ହେଇଗଲା ।

ସେ ଭାରତରୁ ସୁନ୍ଦରତମ ସୁନା ଓ ହୀରା ଖଚିତ ଶାଢ଼ି ଓ ଅତି ଉନ୍ନତ ମାନର ଗହଣା ମଧ୍ୟ ମଗେଇଲେ । ରାଜାଙ୍କ ଜନ୍ମଦିନରେ ହିଁ ତାଙ୍କୁ ସେ ଉପହାର ଦିଆଗଲା ।

କିନ୍ତୁ ତୁମେ ଜାଣ ? ସୁବ୍ରତବାବୁ ପଚାରିଲେ ତନୁଜାଙ୍କୁ ।

ରାଣୀ ଦିନେ ବୋଲି ସେ ଗହଣା କି ଶାଢ଼ି ପିନ୍ଧି ନ ଥିଲେ । କହିପାରିବ କାହିଁକି ?

କାହିଁକି ? ତନୁଜା ଉତ୍ସୁକୀ ହେଇଉଠିଲେ ।

ରାଜାଙ୍କ କହିବା ଅନୁସାରେ ସେ କାଳେ ରାଜାଙ୍କୁ ସୁନ୍ଦର ଦେଖା ନ ଯିବେ ।

ମାଛ ଭାଜୁ ଭାଜୁ ଆଜି ତନୁଜାଙ୍କର ସେ କଥା ମନେ ପଡ଼ିଯିବାରୁ ସେ ଫେଁ କିନା ହସି ଦେଲେ ।

ଦାଣଘରଟା ରୋଷେଇଘରୁ ଅନେକ ବାଟ । ମାଛଭଜାକୁ ଛାଡ଼ି ଏତେ ଦୂରକୁ ଯାଇ ଆସିବାର ସମୟର ବ୍ୟବଧାନକୁ ଚିନ୍ତା କରି ଡରି ଯାଉଥିଲେ ତନୁଜା । ତଥାପି ସେ ଏକ ପ୍ରକାର ଦଉଡ଼ିଲେ ଏବଂ ଚିଠିଟାକୁ ନେଇ ଆସିଲେ । ଖବରକାଗଜରେ ତାଙ୍କର ଆବଶ୍ୟକତା ନାହିଁ ।

ଲଫାପାର ଚିଠିଟାକୁ ସେ ବାଁ ହାତରେ ଦୁଇଟା ଆଙ୍ଗୁଳିରେ ଉଠେଇଲେ ଏବଂ ଫେରୁ ଫେରୁ ଠାକୁରଘର ସାମ୍‌ନାରେ ଠିଆ ହେଇ ସେଇଟାକୁ ଫୋପାଡ଼ି ଦେଲେ ସୁବ୍ରତବାବୁଙ୍କ ପାଖକୁ ଏବଂ କହିଲେ ହେଇ ନିଅ । ବଦ୍ ଖର୍ଚ୍ଚର ଚିଠି ।

ସୁବ୍ରତବାବୁ ସେତେବେଳେ ଚେଆରରେ ବସି ପୂଜା କରୁଥିଲେ । ଗତ ବର୍ଷେ ହେଲା ତାଙ୍କ ଡ଼ାହାଣ ଆଣ୍ଠୁରେ ଦରଜ ହେବା ପରଠୁ ସେ ଏଇ ନୂଆ ଉପାୟଟି ବାହାର କରିଛନ୍ତି । ଠାକୁରଙ୍କ ସାମ୍‌ନାରେ ଗୋଡ଼ ଲମ୍ବେଇ ବସିବାଟା କମ ଅଭଦ୍ରାମି ହେବ ନାହିଁ ଭାବି ସେ ତଳ ଥାକରେ ଥିବା ଠାକୁରମାନଙ୍କୁ ସବା ଉପର ଥାକକୁ ସ୍ଥାନାନ୍ତରୀତ କରି ନିଜେ ଚେୟାରରେ ବସୁଛନ୍ତି । ସେ ମଧ ପୂଜା ବେଳେ ବିଭିନ୍ନ ମନ୍ତ୍ରର ଟେପ୍ ବଜାନ୍ତି । ତା' ଭିତରେ ହନୁମାନ ଚାଳିଶା ଓ ତୁଳସୀ ରାମାୟଣର ମଧୁର ସଂଗୀତ ମଧ ଅଛି । ସୁବ୍ରତବାବୁ ବାଁ ହାତରେ ଟେପ୍ ରେକର୍ଡ଼ର ସୁଇଚ୍‌ଟାକୁ ଅନ୍ କରୁ କରୁ ଚିତ୍ ପଟାଙ୍ଗ ହୋଇ ତଳେ ପଡିଥିବା ଚିଠିଟାକୁ ଦେଖିଲେ ।

ଗୋଟାଏ ବାହାଘର ଚିଠି । ସୁଦୃଶ୍ୟ ନିମନ୍ତ୍ରଣପତ୍ରଟାଏ । କୋଉଠୁ ଆସିଚି କେଜାଣି ? ପରେ ଦେଖାଯିବ ପୂଜା ସରୁ ।

ପୂଜା ପରେ ଗୋଟାଏ ହାତରେ ପଞ୍ଚାମୃତ ଗ୍ଲାସ ଯାହାକୁ ସୁବ୍ରତବାବୁ ନିଜ ପାଇଁ ନିଜେ ତିଆରି କରନ୍ତି, ହାତରେ ଧରି ଅନ୍ୟ ହାତରେ ଚିଠିଟାକୁ ପଢ଼ିବାକୁ ଆରମ୍ଭ କଲେ । ଦୁଧ, କଦଳୀ ଚକଟା, ମହୁ, ସାମାନ୍ୟ ଗୁଆଘିଅ ଓ ଅଦାଛେଚା ମିଶା ପଞ୍ଚାମୃତରୁ ସୁବ୍ରତ ଏକ ଗ୍ଲାସ୍ ସକାଳେ ପୂଜାସାରି ପିଅନ୍ତି । ତା'ପରେ ସେ ଆଉ ଜଳଖିଆ ପ୍ରାୟ କରନ୍ତି ନାହିଁ । ତେଣୁ ମନ ସରାଗରେ

ଗ୍ଲାସ୍ ଧରି ସେଥିରୁ ଢୋକେ ଢୋକେ ପିଉ ପିଉ ନିମନ୍ତ୍ରଣ ପତ୍ରଟାକୁ ଆମୂଳଚୂଳ ପଢ଼ିଲେ । ଥରେ ନୁହେଁ ଦୁଇ ତିନିଥର ଏପାଖ ସେପାଖ କରି । ତା' ପରେ ସେ ଡାକିଲେ, ହେଇ ଶୁଣିଲ । ଆସ ଏଆଡ଼େ ।

ତନୁଜାଙ୍କର ସେତେବେଳକୁ ମାଛଭଜା ସରିଥାଏ । ସେ ଭଜାମାଛ ସବୁକୁ ଗୋଟାଏ ବେଲାରେ ସଜାଡ଼ି ରଖି ସାରି ଥାଆନ୍ତି ।

କଅଣ ଯିବ ? ସେ ରୋଷେଇଘର ବାହାରକୁ ଆସି ପଚାରିଲେ ।

ତୁମେ ପଢ଼ିଚ ଏଇଟା ? ଭଲ ହେଲା ଘନ ପୁଅର ବାହାଘରଟା ଗୋଟାଏ ଭଲ ସମୟରେ ପଡ଼ିଲା । ମୁଁ ତ ଭାବୁଥିଲି ଯଦି ଏପ୍ରିଲ କି ମେ ମାସରେ ପଡ଼ିବ ତେବେ ଯିବାଟା ବେକାର ହେଇଯିବ । ଏତେ ଖରା ଆଉ ସହି ହେବ ନାହିଁ । ମାର୍ଚ୍ଚ ପ୍ରଥମ ସପ୍ତାହରେ ରାଉରକେଲାରେ ଖରା ପଡ଼ି ନଥାଏ । ଯିବା, ୧୦/୧୫ ଦିନ ଟିକେ ବୁଲାବୁଲି କରି ଆସିବା ।

ମୋ ଯିବା କଥା ଛାଡ଼ । ସେଇ ସମୟକୁ ସପ୍ନା ଆସିବ ବୋଲି କହିଚି । ତା' ପୁଅ ଚାଲି ଶିଖିଲାଣି । ଏତେ ଦିନ ପରେ ସେ ଆସିବ । ମୁଁ ସେତେବେଳେ କେମିତି ଯିବି ? ତନୁଜା କହିଲେ ନିଜର ଅସମ୍ମତି ପ୍ରକାଶ କରି ।

ତୁମେ ସେଥିପାଇଁ କାହିଁକି ଚିନ୍ତା କରୁଚ ? ସପ୍ନା କଅଣ ସେଠାକୁ ଯିବନି ? ଘନ କଅଣ ମୋର ଦୁଇ ଝିଅ ଜୋଇଁକୁ ନିମନ୍ତ୍ରଣ କରିବ ନାହିଁ ? ସପ୍ନା ସହିତ ନିର୍ମଳା ମଧ୍ୟ ଆସିବ । ମୁଁ ଭାବୁଚି ଆମେ ସେଇଠୁ ସେମାନଙ୍କୁ ସାଥିରେ ଧରି ଏଠାକୁ ଆସିବା । ପଞ୍ଚାମୃତ ପିଇସାରି ସୁବ୍ରତବାବୁ ଗ୍ଲାସ୍‌ଟାକୁ ତଳେ ଥୋଇ ଦେଲେ ।

ମୋତେ ଲାଗୁନି ସେମାନେ ସେଠାକୁ ଯିବେ । ସାତ, ଆଠ ଦିନ ପିଲାଛୁଆଙ୍କୁ ନେଇ ସେଠି ଚଳପ୍ରଚଳରେ ସେମାନଙ୍କର ସୁବିଧା ହେବ ବୋଲି ମୋତେ ଲାଗୁନି । ଘନବାବୁଙ୍କର ଅବଶ୍ୟ ବିରାଟ ଘର । କୁଆଡ଼େ ୬/୭ଟା କୋଠରି ଅଛି । ଦୁଇ ତିନିଟା କାର୍ ଜିପ୍ । ସେଥିରେ କିଛି ଅଭାବ ନାହିଁ । ଏ' କ୍ଲାସ୍ କଣ୍ଟ୍ରାକ୍ଟରର ବା କଅଣ ଅଭାବ । ହମିରପୁରରେ ନୂଆ ତିନିମହଲା କୋଠା ତିଆରି କରିଛନ୍ତି । ତଥାପି ଏ ଦୁଇ ଝିଅଙ୍କ ଯୋଉ ହାଇଫାଇ କଥା । ଆଉ ତାଙ୍କ ପିଲାଙ୍କର ଯୋଉ ଇଂଲିଶ ଷ୍ଟାଇଲ, ସେଥିରେ ସେମାନେ ଗଲେ ଘଣ୍ଟାଟିଏ ମଧ୍ୟ ଚଳିପାରିବେ ନାହିଁ । ନାକ ଟେକି ଦେବେ ।

ସୁବ୍ରତ ଚୁପ୍ ହେଇଗଲେ । ତନୁଜା ଠିକ୍ କଥା କହୁଛନ୍ତି । ଦୁଇ ଝିଅ ଭିତରୁ ଜଣେ ବମ୍ବେରେ ଆଉ ଜଣେ ଦିଲ୍ଲୀରେ । ଜଣେ ଜୋଇଁ ଚାର୍ଟାର୍ଡ଼ ଆକାଉଣ୍ଟାଣ୍ଟ ଓ ଆଉ ଜଣେ ବମ୍ବେରେ

ସିପିଙ୍ଗ ଏଜେଣ୍ଟ । ଏଜେନ୍ସୀ ସମୁଦ୍ରିର । ପୁଅ ଏବେ ମାଲିକ । ଝିଅ ଜୋଇଁ ସାରା ପୃଥିବୀ ବୁଲନ୍ତି ବୋଲି ତାଙ୍କ ପୁଅ ବମ୍ବେର ଗୋଟାଏ ଖ୍ୟାତନାମା ରେସିଡେନ୍ସିଆଲ ସ୍କୁଲରେ ପଢ଼େ । ସେମାନେ ଯେ ରାଉରକେଲା ଭଳିଆ ଡେଲି ଫ୍ଲାଇଟ୍ ନ ଥିବା ଗୋଟାଏ ଜାଗାକୁ ଆସିବାକୁ ଚାହିଁବେ ଏ ବିଷୟରେ ତାଙ୍କର ସନ୍ଦେହ ଥିଲା । ଦିନକ ପାଇଁ ଆସିବାର ସୁବିଧା କାହିଁ ? ତେବେ ସାନଝିଅ ସପ୍ନା କିଛିଦିନ ଗୋଟାଏ ପରିବର୍ତ୍ତନରେ ଆସିବା କଥାକୁ ଗ୍ରହଣ କରାଯାଇପାରେ ।

ତା'ଦେହ କୁଆଡ଼େ ଭଲ ରହୁନି । ବାରମ୍ବାର ଜାହାଜରେ ବିଦେଶ ଯାତ୍ରା ଫଳରେ ତା'ର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଚି । ସେ ମାସଟିଏ ଆସି ଏଠି ଗାଁରେ ରହିବାକୁ ଚାହୁଁଚି । ରହୁ । ଏଥିରେ ସୁବ୍ରତବାବୁଙ୍କର କଅଣ କହିବାର ଅଛି ? ବରଂ ଖୁସି ହେବାର କଥା । କାରଣ ସାନଝିଅ ସପ୍ନା ଥିଲା ତାଙ୍କର ଗେହ୍ଲା ଝିଅ । କିନ୍ତୁ ସେ ଯଦି ତା' ବଡ଼ପୁଅକୁ ସାଥିରେ ନେଇ ଆସନ୍ତା ତେବେ ଭଲ ହୁଅନ୍ତା । ତା' ସହିତ ସୁବ୍ରତବାବୁଙ୍କର ସଂପର୍କ ଅତି ନିବିଡ଼ । ସାତ ବର୍ଷ ତା'ର ବୟସ । କିନ୍ତୁ ସେ ତ ଆସିବ ନାହିଁ । ଆସିବ ସପ୍ନା ଏକୁଟିଆ, ତା' ସାନପୁଅକୁ ସାଥିରେ ନେଇ ।

ସୁବ୍ରତବାବୁ ଚିନ୍ତା କରୁଥିଲେ । ତାଙ୍କ ସୁଖୀ ପରିବାରଟି କଥା ମନେ ପକେଇଲେ ସେ ବେଶ ଆତ୍ମ ସନ୍ତୋଷ ଲାଭ କରନ୍ତି । ଗୋଟାଏ ସଫଳ ପିତୃତ୍ୱର ଆତ୍ମସୁଖ ତାଙ୍କୁ ମାଡ଼ି ମାଡ଼ିପଡ଼େ । ତାଙ୍କ ଦୁଇଝିଅ ଯେମିତି ସୁନ୍ଦରୀ ଓ ଉଚ୍ଚ ଶିକ୍ଷିତ । ତାଙ୍କର ଏକମାତ୍ର ପୁତ୍ର ସେମିତି ସୁଦର୍ଶନ, ଉଚ୍ଚଶିକ୍ଷିତ, ଇଂଜିନିୟର ଏବଂ ଏବେ ଆମେରିକାରେ । ବୋହୂ ବି ସେମିତି । ସେ ବି ଚାକିରି କରୁଚି । ସେମାନେ ସେଇଠି ଅବସ୍ଥାନ କରିବେ । ହେଇତ ସେଦିନ ପୁଅ ତନ୍ମୟ ଆମେରିକାରୁ ଟେଲିଫୋନ୍ କରିଥିଲା । କହୁଥିଲା ବାପା ମୁଁ ଏ'ଠି ସ୍ଥାୟୀ ଭାବରେ ରହିବି । କମ୍ପାନୀ ମୋତେ ଏବେ ମିଡ଼ଲ ମାନେଜମେଣ୍ଟ ପଜିସନ୍‌କୁ ପ୍ରମୋସନ ଦେଇଛନ୍ତି । ଏବେ ମୋତେ ବେଶୀ ଟୁର କରିବାକୁ ପଡ଼ିବ । ମାସକୁ ଦଶ ପନ୍ଦର ଦିନ ମୋତେ ପଶ୍ଚିମରୁ ପୂର୍ବକୁ ଓ ଉତ୍ତରରୁ ଦକ୍ଷିଣକୁ ଯିବାକୁ ପଡ଼ିବ । ମାନସୀର କାମ ଦିନକୁ ମାତ୍ର ଚାରି ଘଣ୍ଟା । ସେ ବାକି ସମୟତକ ଏକୁଟିଆ ହେଇ ଯାଉଚି । ମୁଁ ଏବେ ଗୋଟାଏ ଫ୍ଲାଟ କିଣିବି ବୋଲି ଠିକ୍ କରିଚି । ଆଉ ପାଞ୍ଚ /ସାତ ଦିନ ଭିତରେ ଫର୍ମାଲିଟି କମ୍ପ୍ଲିଟ୍ ହେଲେ ହେଇଯିବ । ଆପଣମାନେ ଆଉ ସେଠି କାହିଁକି ଏକୁଟିଆ ରହିବେ ? ଗାଁରେ ଆପଣଙ୍କ ଦେହ ପା'ର ଯତ୍ନ କିଏ ନେବ । ବରଂ ଏଇଠି ଆସି ଏକାଠି ରହନ୍ତୁ ।

ତନ୍ମୟ କିନ୍ତୁ ଫ୍ଲାଟର ଦାମ କଥା କିଛି କହିଲାନି । ବଡ଼ ଫ୍ଲାଟଟିଏ ନିଶ୍ଚୟ ହେଇଥିବ । କେତେ ହେଇଥିବ ଘରର ଦାମ ? ପଚାଶ ଷାଠିଏ ଲକ୍ଷ ନା ଆହୁରି ବେଶି ? ସୁବ୍ରତବାବୁ ଚିନ୍ତାକରି ପାରୁ ନଥିଲେ ।

ସୁବ୍ରତବାବୁ 'ଭାଗ୍ୟ' ଶବ୍ଦରେ ବିଶ୍ୱାସ କରୁ ନଥିଲେ ମଧ୍ୟ ଏ ସବୁ ଯାକ ସକରାତ୍ମକ ଶବ୍ଦକୁ ଯୋଡ଼ି ଯେତେବେଳେ ଦେଖନ୍ତି ସେତେବେଳେ ସେ ଭାଗ୍ୟ ଶବ୍ଦକୁ ମଧ୍ୟ ଦେଖନ୍ତି । ତାଙ୍କ ସପକ୍ଷରେ ଭାଗ୍ୟ ଶବ୍ଦଟା ଦୃଢ଼ ହେଇ ଛିଡ଼ା ହେଇ ନଥିଲେ ତାଙ୍କ ସ୍ଥିତି କେଉଁଠି ଥାଆନ୍ତା ଏବେ ?

ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟରେ ସେ ସାଧାରଣ ଚାକିରିଟିଏ କରୁଥିଲେ । ସେମିତି କିଛି ବଡ଼ ଚାକିରି ତାଙ୍କର ନଥିଲା । ୧୯୬୦ ମସିହାରେ ସେ ଯେତେବେଳେ ରାଉରକେଲା ଆସିଲେ ସେତେବେଳେ ସେ ଏକୁଟିଆ ଆସି ନଥିଲେ । ଆଗପଛ ହେଇ ତାଙ୍କ ସହିତ ଥିଲେ ସାତ ଆଠ ଜଣ । ସେତେବେଳେ ଏଇ କମ୍ପାନୀ ଚାକିରିଟାକୁ ସମସ୍ତେ ଘୃଣା କରୁଥିଲେ ମଧ୍ୟ ତାକୁଇ ଆଦରି ନେଇଥିଲେ । ସେତେବେଳର ରାଉରକେଲା କଥା ମନେ ପଡ଼ିଲେ ସୁବ୍ରତବାବୁଙ୍କ ମୁଣ୍ଡ ବୁଲେଇ ଦିଏ ? ଘର, ବାହାର, କାରଖାନା ଓ ଅଫିସ୍‌ରେ ସେ ଯେମିତି ଓଡ଼ିଆ ଛାଡ଼ି ଅନ୍ୟ ଭାଷାରେ କଥାବାର୍ତ୍ତା କରୁଥିଲେ ସେତେବେଳେ ସେ ଭାବୁଥିଲେ ଓଡ଼ିଆ ଭୁଲି ଯିବେ କି ଆଉ ? କରତଗୁଣ୍ଡରେ ଚୁଲୀ ଜଳୁଥିଲା । ନିଜେ ରାନ୍ଧି ଖାଉଥିଲେ । ପାଣି ବାଲଟିର ଦାମ ଥିଲା ଟଙ୍କାଟିଏ । ସକାଳେ ତିନି ଭାର ଓ ସନ୍ଧ୍ୟାରେ ତିନି ଭାର ହିସାବରେ ମାସକୁ ଲୋକଟି ନେଉଥିଲା କୋଡ଼ିଏ ଟଙ୍କା ।

ମାଆ ଯେତେବେଳେ ଶୁଣିଲା ପାଣି କିଣିବାକୁ ପଡୁଛି ସେ କହିଲା ରାଉରକେଲାରେ ରହିବା ଦରକାର ନାହିଁ । ଆମ ଗାଁ ସ୍କୁଲ ଢେର ଭଲ ।

ସେ ରାଉରକେଲା ଆଜି ନାହିଁ । ସେ ଲୋକମାନେ ମଧ୍ୟ ନାହାନ୍ତି । ବହୁତ ବଦଳି ଯାଇଛି । ତାଙ୍କ ସହିତ ଆସିଥିବା ବନ୍ଧୁମାନେ ଆଜି ସମସ୍ତେ ପ୍ରତିଷ୍ଠିତ । ମୋଟାମୋଟି ଭଲରେ ଅଛନ୍ତି । ଭଲରେ ମଧ୍ୟ ଅଛନ୍ତି ତାଙ୍କ ପିଲାମାନେ । ଦୁଇ/ତିନି ଜଣ ଏବେ ଅବଶ୍ୟ ବିଦାୟ ନେଲେଣି ପୃଥିବୀରୁ । କାରଖାନା ଭିତରଟାକୁ ସୁବ୍ରତ ସେତେବେଳେ ନାଜୀଙ୍କ ଗ୍ୟାସ୍ ଚେମ୍ବର ବୋଲି କହୁଥିଲେ । ପରମାୟୁ ସେ'ଠି ନ କମି ବଢନ୍ତା କେମିତି ? ସୁରେଶ ବିଦାୟ ନେଲା ଯକ୍ଷ୍ମାରେ, ଆଉ ନରହରି ଗଲା କ୍ୟାନସରରେ । କିନ୍ତୁ ତାଙ୍କ ପିଲାମାନେ ଅନାଥ ହେଇ ନାହାନ୍ତି । କମ୍ପାନୀ ଠିଆ ହେଇଚି ସେମାନଙ୍କ ପାଖରେ ଦୃଢ଼ ଭାବରେ । ସେମାନେ ପାଠପଢ଼ି ସୁପ୍ରତିଷ୍ଠିତ ସେଇ କାରଖାନାରେ । କିନ୍ତୁ କେହି ସୁବ୍ରତ ବାବୁଙ୍କ ଭାଗ୍ୟର ଉଚ୍ଚତାକୁ ହାତ ମଧ୍ୟ ବଢ଼ାଇପାରିନାହାନ୍ତି । ସୁବ୍ରତ ତାକୁଇ ଭାଗ୍ୟ ବୋଲି କହୁଛନ୍ତି । କେତେ ଉପରକୁ ସେ ଉଠି ଯାଇଛନ୍ତି ସତରେ ? ସୁଖ ଆଉ କାହାକୁ କହନ୍ତି ?

ସୁବ୍ରତ ତାଙ୍କ ଜୀବନରେ ଅଭାବ ବୋଲି କିଛି ଜାଣି ନାହାନ୍ତି । ଅବଶ୍ୟ ପିଲାକାଳଟା ତାଙ୍କର ସେତେ ଭଲ ନଥିଲା । ତାଙ୍କର ମନେପଡ଼େ ସେ କଥା । ଗୋଟାଏ ମଇଳା କୋଚଟ ହାଫ୍ ପେଣ୍ଟ୍ ପିନ୍ଧି ଅଧେ ଛିଣ୍ଡି ଯାଇଥିବା ବୋତାମର ସାର୍ଟ ଖଣ୍ଡେ ଦେହରେ ଗଳେଇ ବସ୍ତାନି

କାନ୍ଧରେ ଝୁଲେଇ ସ୍କୁଲ୍ ଗଲା ବେଳକୁ ତାଙ୍କର ବରାବର ଡେରି ହେଇ ଯାଉଥିଲା । ପ୍ରାର୍ଥନା ସଭାରେ ସେ କେବେବି ଯୋଗ ଦେଇପାରୁ ନଥିଲେ ବୋଲି, ତାଙ୍କର ମନେଅଛି, ତାଙ୍କ ହେଡ୍‌ମାଷ୍ଟର୍ ବାପାଙ୍କୁ କହିଲେ ଯୋଉ ପିଲା କେବେ ବି ଈଶ୍ୱରଙ୍କ ପ୍ରାର୍ଥନା କରିପାରେ ନାହିଁ, ତାକୁ ଈଶ୍ୱର ସହାୟ ହେବେ କେମିତି ? ପିଲାର ଭବିଷ୍ୟତ ମୋଟେ ଭଲ ନୁହେଁ । ପ୍ରତିଦିନ ଗାଳିମାଡ଼ ଖାଉଥିବା ପିଲାଟି କେମିତି ପ୍ରାର୍ଥନା କଥା ମନେ ରଖିପାରେ ନାହିଁ କେଜାଣି ? ସେତେବେଳେ ସୁବ୍ରତ ମନେ ମନେ ଭାବୁଥିଲେ କହି ଦେବେକି ସାର୍‌ଙ୍କୁ । ପ୍ରାର୍ଥନା ସଭା କଥା କାହିଁ ଆମ ରୁଟିନ୍‌ରେ ତ ଲେଖା ନାହିଁ । ଯାହା ରୁଟିନ୍‌ରେ ନାହିଁ ତାହା ସ୍କୁଲରେ ପ୍ରଥମେ ହେବ, ଆଉ ଯାହା ରୁଟିନ୍‌ରେ ଅଛି ସେଇଟା ପରେ ହେବ, ଏହା କୋଉ ନିୟମ ? ପ୍ରାର୍ଥନା ସଭାଟା ସ୍କୁଲ ଛୁଟି ବେଳେ ହେଲେତ ଆଉ ସେ ଅସୁବିଧା ହୁଅନ୍ତା ନାହିଁ ।

କିନ୍ତୁ ସାତ ଆଠ ବର୍ଷର ଅବୋଧ ବାଳକ ସୁବ୍ରତ ସେ କଥା କହିପାରିନଥିଲା । ସେ ମଧ କହିପାରିନଥିଲା ଯେ ତା' ମାଆ ହିଁ ତା'ର ସ୍କୁଲକୁ ଆସିବାରେ ଡେରିର ଏକମାତ୍ର କାରଣ । ସୁବ୍ରତ ଖାଇପାରେ ନାହିଁ ବୋଲି ମାଆ ନିଜେ ତାକୁ ଖୁଆଇ ବସିବେ ଏବଂ ପେଟ ନ ପୂରିବା ଯାଏ କି ଥାଳି ନ ସରିବା ଯାଏ ସେ ସୁବ୍ରତକୁ ଜୋର୍ କରି ଅଟକେଇ ରଖନ୍ତି ।

ପେଟରେ ଭୋକ ଥିଲେ ଛୁଆ କେମିତି ପାଠ ପଢ଼ିବ ? ମନ ଯଦି ପେଟ ପାଖରେ ଥାଏ ପାଠ ସେ ମନରେ କେମିତି ପଶିବ ? ମାଆ କହନ୍ତି । ଖାଲି ଯେ ତାଙ୍କ ମାଆଙ୍କ ଲାଗି ତାଙ୍କର ସ୍କୁଲ ଯିବାରେ ଡେରି ହେଉଥିଲା ତା ନୁହେଁ । ପ୍ରାକୃତିକ ଅସୁବିଧା ମଧ ଅନେକ ।

ନଈ କୂଳେ କୂଳେ ଧାଇଁବାକୁ ପଡୁଥିଲା ପ୍ରାୟ ଦେଢ଼ ମାଇଲ । ସୁବ୍ରତ ସେତେବେଳେ ଜୋତା ପିନ୍ଧୁ ନ ଥିଲେ । ଗାଁ ସ୍କୁଲରେ ସେତେବେଳେ ଜୋତା କିଏ ପିନ୍ଧୁଥିଲା ଯେ ? ମାଷ୍ଟରମାନେ ବି ପିନ୍ଧୁ ନଥିଲେ । ହେଡ଼ ମାଷ୍ଟର ପ୍ରଫୁଲ୍ଲ ବେନାର୍ଜୀଙ୍କ ଘର ସ୍କୁଲ ପଛ ପଟରେ । ସେ ସ୍କୁଲକୁ ଆସୁଥିଲେ ଖଡ଼ମ ପିନ୍ଧି । ସ୍କୁଲରେ ସବୁଠିତ କାଦୁଅ ପଚପଚ । ଜୋତା କିଏ କାହିଁକି ପିନ୍ଧିବ । ସେତେବେଳେ ସବୁଠୁ ମଜାର ବେଶ ଥିଲା ସଂସ୍କୃତ ପଣ୍ଡିତ ବିଶ୍ୱେଶ୍ୱର ପଣ୍ଡାଙ୍କର । ଘର ତାଙ୍କର ଶାଳୀକୋଠା । ସ୍କୁଲ ପାଖରୁ ପ୍ରାୟ ପାଞ୍ଚ କିଲୋମିଟର ଦୂରରେ । ପୂରାପୂରି ଗହୀର ବିଲରେ ରାସ୍ତା । ବୁଢ଼ା ଗୋଟାଏ ଥଳୀରେ ଧୋତି, ପଞ୍ଜାବି ରଖି ତାକୁ କାନ୍ଧରେ ଝୁଲେଇ ଆସି ସ୍କୁଲ ପୋଖରୀରେ ଗୋଡ଼ ହାତ ଧୋଇ ଅଫିସରେ ଧୂତି ପଂଜାବି ପିନ୍ଧି ଗାମୁଛାକୁ ପଡ଼ିଆରେ ଶୁଖାନ୍ତି ।

ସୁବ୍ରତ ବି ସେମିତି କିଛିଟା ଧାନ ବିଲ ଅତିକ୍ରମ କରି ତା ପରେ ନଈ ପାଖ ରାସ୍ତା ଧରନ୍ତି ।

ବର୍ଷାଦିନେ ନଈ ମାଡ଼ିଲେ ମାଆ ମନା କରେ । ଆଜି ସ୍କୁଲ ଯାଆନା ।

ରୀତିମତ ଯୁଦ୍ଧ । ସେ ପିଲାମାନେ ପାଠ ପଢ଼ିବା ବୟସରେ ଯେତିକି ଯୁଦ୍ଧ କରିଛନ୍ତି ଆଜି ପିଲାଙ୍କର ସେ ମନୋବୃତ୍ତି କାହିଁ ? ରାଉରକେଲାରେ ତା'ର ଆବଶ୍ୟକତା ମଧ୍ୟ ନାହିଁ । ସ୍କୁଲ ବାହାରିଲା ବେଳକୁ ମାଆ ନେଇ ବସ୍‌ରେ ଉଠେଇ ଦେଇ ଆସୁଛି । ଜୋତା, ସାର୍ଟ, ପେଣ୍ଟ୍ ଟାଇ କୋଉଥିରେ ଅଭାବ ନାହିଁ ।

ପ୍ରାଇମେରୀ ସ୍କୁଲର ଛାତ୍ର ସୁବ୍ରତ ଓ ଏବେ ତାଙ୍କ ପୁଅ ଝିଅର ଛାତ୍ର ବେଳର ଚିତ୍ର ଭିତରେ ଗୋଟାଏ ଆକାଶ ପାତାଳର ପାର୍ଥକ୍ୟ ।

ବାଲ୍ୟକାଳର ସବୁ ପ୍ରକାର ନକରାତ୍ମକତା ସତ୍ତ୍ୱେ ଭାଗ୍ୟକୁ ଆଖି ମିଟିକା ମାରି ସୁବ୍ରତବାବୁଙ୍କ ସୌଭାଗ୍ୟ ସବୁ ତାଙ୍କ ଚାରିପଟେ ଠିଆ ହେଇ ଭି.ଭି.ଆଇ. ପି ମାନଙ୍କର ସୁରକ୍ଷା କରି ବଳୟ ସୃଷ୍ଟି କରିଛନ୍ତି । ଆଉ ସୁବ୍ରତ ତାକୁଇ ଦେଖି ହସୁଛନ୍ତି ଆଜି ।

ସୁବ୍ରତବାବୁ ଶେଷରେ ଶୁଣାଇ ଦେଲେ ଯେ, ସେ ଘନପୁଅର ବାହାଘରରେ ଯୋଗ ଦେବାକୁ ରାଉରକେଲା ଯିବେ । ଅନେକ ଦିନୁ ରାଉରକେଲା ଛାଡ଼ି ଆସିଲେଣି । ଚାକିରିରୁ ବିଦାୟ ନେବାର ଅନେକ ବର୍ଷ ହେଇ ଗଲାଣି । ତା' ପରେ ସେ ଯଦିଓ ଥରେ ଅଧେ ସେଠାକୁ ଯାଇଛନ୍ତି । ଗୋଟାଏ ଦିନ ମଧ୍ୟ ରହିନାହାନ୍ତି । ସାଙ୍ଗସାଥୀଙ୍କୁ ଭେଟିବାର ସୁଯୋଗ ପାଇ ନାହାନ୍ତି । ସେମାନଙ୍କ ପିଲା ପରିବାରର ଖବର ରଖିପାରିନାହାନ୍ତି । ତା ଛଡ଼ା କେତୋଟି ପରିବାର ସହିତ ତାଙ୍କର ସଂପର୍କ ଅତି ଘନିଷ୍ଠ ଥିଲା । ସେମାନଙ୍କ ଭିତରୁ ଅଧିକାଂଶ ଏବେ ଅବସର ନେଲେଣି । କିନ୍ତୁ ସେମାନେ ସବୁ ସେଇଠି ସେଟଲ କରି ଯାଇଛନ୍ତି । କେହି କେହି ଅନ୍ୟ ଆଡ଼େ ଚାଲି ଯାଇଛନ୍ତି ମଧ୍ୟ ।

ଏଥର ସୁବ୍ରତ ଯାଇ ସେମାନଙ୍କ ଖୋଜ ଖବର ନେବେ । ସେମାନଙ୍କୁ ଭେଟିବେ । ଦେଖିବେ ସେମାନେ କେମିତି ଅଛନ୍ତି । କାରଖାନାଟା ଏବେ ମଡ଼ର୍ଣ୍ଣାଇଜେସନ୍ ପରେ ବେଶ ଭଲ ଚାଲୁଛି ବୋଲି କୁହାଯାଉଛି । ମଝିରେ ତା'ର ଅବସ୍ଥା କୁଆଡ଼େ ଅତି ଖରାପ ହେଇ ଯାଇଥିଲା ବୋଲି ତା'ର କିଛି ଅଂଶ ପ୍ରାଇଭେଟ୍ କମ୍ପାନୀମାନଙ୍କୁ ବିକ୍ରି ହେବ ବୋଲି କୁହା ଯାଉଥିଲା । ହୁରିପଡ଼ି ଯାଇଥିଲା ଯେ, ରାଉରକେଲା ଏକ ମୃତ ସହର । କିଏ ଜଣେ ସେତେବେଳେ ରାଉରକେଲାରୁ ଫେରି ତାଙ୍କୁ କହିଥିଲା ଯେ ସହରଟାକୁ ଆଉ ଚାହିଁ ହେଉ ନାହିଁ । ସବୁଠି ଗୋଟାଏ ଖାଁ ଖାଁ ଭାବ । ସ୍କୁଲ ଓ ମାର୍କେଟ ସେଣ୍ଟରଗୁଡ଼ିକରେ ଯଦି ଦିନରେ ଭୂତ ଡେଉଁଚି ତେବେ ସେ'ଠି ଆଉ ଅଛି କଅଣ ? ସେତେବେଳେ କିଏ ଜଣେ କହୁଥିଲା ଏବେ କମ୍ପାନୀ ଠିକ୍ ସମୟରେ ଦରମା ଦେଉ ନାହିଁ । LTC ପ୍ରଭୃତି ବହୁ ସୁବିଧା ସୁଯୋଗ ବନ୍ଦକରି ଦିଆଯାଇଛି । ଛଟେଇବି ଆରମ୍ଭ ହେଇଚି । ବୋନସ କଥା ସମସ୍ତେ ପ୍ରାୟ ଭୁଲି ଗଲେଣି । ହେଲ୍‌ଥ ସେଣ୍ଟର ବନ୍ଦ ହେଲା । ଘରତ ବର୍ଷ ବର୍ଷ

ହେଲା ମରାମତି ହେଉନି ବୋଲି ଛାତରୁ ପାଣି ଗଳୁଚି । ଇସ୍ । କଅଣ ହେଲା ଏ କମ୍ପାନୀର ।

ତେବେ ଏବେ କୁଆଡ଼େ ସେ ଅବସ୍ଥାର ପରିବର୍ତ୍ତନ ଆସିଲାଣି । ଅନେକ ବଦଳି ଗଲାଣି । ଏଇଟା ସତ କଥା ଡ୍ରାଇଭର ଯଦି ଭଲ ଥାଏ ତେବେ ରାସ୍ତା ଯେତେ ଖରାପ ଥିଲେ ମଧ ଗାଡ଼ି ଠିକଣା ବାଟରେ ନିରାପଦରେ ଯାଇପାରେ । ଆହା, ଆମ ଦେଶର ଗାଡ଼ିଟା ଯଦି ଏମିତି ଗୋଟାଏ ଭଲ ଡ୍ରାଇଭର ହାତରେ ପଡ଼ନ୍ତା ।

ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱ ଅତିବାହିତ ହେଇଥିଲେ ମଧ ଏ ଯାଏଁ ଗୋଟିଏ ଭଲ ଡ୍ରାଇଭର ଦେଶକୁ ମିଳିଲା ନାହିଁ । ସ୍ୱାଧୀନତା ପରେ ଦେଶଟା ନପୁଂସକମାନଙ୍କ ଦେଶରେ ପରିଣତ ହେଇଗଲା । ପୁରୁଷଟିଏ ଆଉ ଜନ୍ମଲାଭ କଲେ ନାହିଁ ଏ ମାଟିରେ । ମାଟିଟା ବଂଧ୍ୟା ପାଲଟି ଗଲା ।

ସୁବ୍ରତ ତନୁଜାଙ୍କୁ କହିଲେ, ମୋତେ ଲାଗୁନି ସପ୍ନା ଠିକ୍ ସମୟରେ ଏଠାକୁ ଆସି ପାରିବ । ସେ ମଧ ରାଉରକେଲା ସେତେବେଳେ ଯାଇପାରିବ କିନା ସନ୍ଦେହ । ତେଣୁ ତମେ ରାଉରକେଲା ଚାଲୁନ ? ତମେତ କହୁଥିଲ ଯିବ ବୋଲି । ହନୁମାନବାଟିକା ଓ ବେଦବ୍ୟାସରେ ଏବେ ୨୪ ଘଣ୍ଟା ଲୋକଙ୍କ ଭିଡ । ଅନେକ ପରିବର୍ତ୍ତନ ସେଠି ହେଲାଣି । ଚାଲ ଥରେ ଦେଖି ଆସିବ । ତମ ଭାଇଙ୍କୁ ମଧ ତମେ ଅନେକ ଦିନୁ ଦେଖିନ କହୁଥିଲ । ଆଉ କଅଣ ଯାଇପାରିବ ?

ତନୁଜା ମୁହଁ ମୋଡ଼ି ଦେଲେ । ମୋର ଦରକାର ନାହିଁ । ମୋତେ ମୋ ଘର ଭଲ । ମୋ ଆଣ୍ଠୁର ଦରଜଟା ଯେମିତି ବଢୁଚି ସେଥିରେ ସେଠାକୁ ଯାଇ ମୁଁ ହଇରାଣ ହେବି । ଏଠିତ ଅନ୍ତତଃ ସାତ ଦିନରେ ଥରେ କଲ୍ୟାଣ ଜେନା ଆସି ସେକ ଦେଉଛି, ମାଲିସ ବି କରି ଦେଉଛି । ଦେଖିବି, ଏଠି ନ ହେଲେ ରାମଦେବଙ୍କ ଆଶ୍ରମକୁ ଯିବା ସେଠାକୁ ଗଲେ ଏ ରୋଗ ଫୁଟୁକିରେ ଉଡ଼ିଯିବ । ମରୁ ମରୁ କ୍ୟାନସର ରୋଗୀ ସେଠି ବଞ୍ଚି ଉଠୁଛି । ତମେ କଅଣ ଯିବାକୁ ଦବ ?

ଭୋର ହେଇ ଆସୁଛି । ଏଇ ଭୋରଟା କାହିଁକି କେଜାଣି ସୁବ୍ରତଙ୍କୁ ବହୁତ ଭଲ ଲାଗେ । ସୁବ୍ରତଙ୍କ ପୁଅ ଯେତେବେଳେ ସାନ ଥିଲା ସେତେବେଳେ ଥରେ ପଚାରିଥିଲା ଭୋରର ରଂଗ କଅଣ ବାପା ? ତା' ହାତରେ ରଂଗ, ତୁଳୀ ଓ ଖଣ୍ଡେ ଡ୍ରଇଂ କାଗଜ । ମେଞ୍ଚା ମେଞ୍ଚା ରଂଗକୁ ନେଇ ସେ ପଚାରୁଚି ଭୋରର ରଂଗ । ଭୋରର ରଂଗ କହିଲେ ସେ ଛବି ଆଙ୍କିବ । ସୁବ୍ରତ କଅଣ କହିବେ ? କଅଣ ବା ଭୋରର ରଂଗ । କିଏ ଜାଣେ ? କିଏ ଚିହ୍ନିଚି ସେ ରଂଗକୁ ? ନା ହୁସେନ୍ ନା ପିକାଶୋ ? କିଏ ବା ସୃଷ୍ଟି କରିପାରିଚି ସେ ଅଭିନବ ରଂଗର ଭୋର ଓ ତାର ସକାଳକୁ ? ନା ବିଦ୍ୟାଧର ବର୍ମା ନା ଦୀନନାଥ ପାଠୀ ? କିଏ କହି ପାରିବ ସକାଳର ରଂଗ କଅଣ ?

ମାର୍କସ ଜାଣି ନଥିବେ ସକାଳ କେମିତି ହୁଏ । ସକାଳର ଜନ୍ମ ସବୁବେଳେ ରହସ୍ୟମୟ । ଲେନିନ୍ ଓ ମାଓମାନେ ଜୀବନଯାକ ଭୋରର ଅଦୃଶ୍ୟ ଜନ୍ମଜାତକ ଖୋଜିବା ପାଇଁ ଅପେକ୍ଷା କରିଥିଲେ । ଅପେକ୍ଷା ବି କରିଥିଲେ ଗାନ୍ଧି ଓ ସୁଭାଷ - ଭାରତବର୍ଷର ସକାଳ ଦେଖିବା ପାଇଁ । ଗୋଟାଏ ନୂଆ ସକାଳର ଚିତ୍ର ଆଙ୍କିବା ପାଇଁ ଭଗତ ସିଂ ଓ ଲକ୍ଷ୍ମଣ ନାୟକ ଠାରୁ ଆରମ୍ଭ କରି ଚିଗୁଇ ଭେରା ଓ ହୋଚିମିନ ପର୍ଯ୍ୟନ୍ତ କମ ରାତି ଅନିଦ୍ରା ରହି ନଥିବେ । ସକାଳର ରଂଗ ତଥାପି ସେମାନଙ୍କ ଠାରେ ଅଜ୍ଞାତ ରହିଗଲା । ସକାଳର ରଂଗ ସବୁବେଳେ ରହସ୍ୟମୟ । ସେ ରହସ୍ୟକୁ କିଏ ଭେଦ କରିପାରିଲା ?

ସୁବ୍ରତ ସେଦିନ ବସ୍ ଭିତରୁ ଭୋର୍‌ର ଆକାଶକୁ ଚାହିଁ ମୁଗ୍ଧ ହୋଇ ଯାଉଥିଲେ । ତାଙ୍କୁ ଲାଗୁଥିଲା ସେ ଦିନର ଆକାଶଟାକୁ ସେ ଯେମିତି ପ୍ରଥମ କରି ଦେଖୁଛନ୍ତି । ସେ ମନେ ପକେଇଲେ ସେ କଅଣ ଭୋରର ଆକାଶକୁ ଆଗରୁ କେବେ ଦେଖି ନଥିଲେ । କାହିଁ ମନେପଡୁନି ତ ? ଆଜିର ଏ ରଂଗ କଅଣ ସେତେବେଳେ ନଥିଲା ? ଶୈଶବ, କୈଶୋର, ଯୌବନ ସେ ବହୁ ପଥ ଅତିକ୍ରମ କରି ଆସିଛନ୍ତି । ଏବେ ସେ ଜୀବନର ସାୟାହ୍ନରେ ପଡ଼ିଉଠି ଦୌଡ଼ି ଦୌଡ଼ି ଚାଲୁଥିବା ବେଳେ ସେ ତ କାହିଁ ଭୋର କେବେ ଦେଖି ନାହାନ୍ତି ।

ସେଦିନ ପୁଅକୁ ଯେମିତି ସେ ଭୋରର ରଂଗ ଚେଷ୍ଟାକରି ମଧ କହି ପାରି ନଥିଲେ ଏବଂ ତା'ପରେ ନିଜର ଅଦମ୍ୟ ଅସହାୟତାରେ ଭାଙ୍ଗି ପଡୁଥିଲେ । ଜୀବନଯାକ ବହୁ ପାହାଚ ଚଢ଼ି ଚଢ଼ି ଆସିଥିଲେ ମଧ ଭୋର ଆକାଶର ରଙ୍ଗକୁ ସେ ଚିହ୍ନି ପାରିନଥିଲେ । ଆଉ ଆଜି ? ଆଜି ସେ ଯୋଉ ସକାଳ ଦେଖୁଛନ୍ତି ସେଇଟା ତାଙ୍କର ବହୁ ଇପ୍‌ସିତ ସକାଳ କି ? ସେ ତାକୁଇ ଖୋଜୁ ଥିଲେ ଜୀବନଯାକ ? ତାଙ୍କୁ ଲାଗିଲା ସେ ଯେମିତି ଗୋଟିଏ ନୂତନ ପୃଥିବୀରେ ପହଞ୍ଚି ଯାଇଛନ୍ତି ।

ରାଉରକେଲାର ଆମ୍ବବାଗାନ ଛକ ଉପରେ ଓହ୍ଲେଇବା ବେଳକୁ ସକାଳଟା କେମିତି କେଜାଣି ରାଉକେଲାକୁ ଆଡେଇ ଦେଇ ଚାଲି ଯାଇଥିଲା ।

ସୁବ୍ରତବାବୁ ରାଉରକେଲାର ପରିବର୍ତ୍ତିତ ରୂପକୁ ବସରେ ଆସିଲା ବେଳେ ଦେଖିଥିଲେ ମୁଗ୍ଧ ହେଇ । ଏବେ ସେ ଦେଖୁଛନ୍ତି ଆମ୍ବବାଗାନ । ଗୋଟାଏ ଶାନ୍ତଶିଷ୍ଟ ସୁଧାର ମଣିଷ ପରି ଠିଆ ହେଇଥିଲା ଯାତ୍ରୀମାନଙ୍କୁ ସ୍ୱାଗତ କରିବାକୁ ।

ସୁବ୍ରତବାବୁ ଚାରିଆଡ଼କୁ ଆଖି ବୁଲାଇଲେ । ଗୋଟାଏ ମାତ୍ର ଅଟୋ ରିକ୍ସା ଆଡ଼କୁ ଯାଉଛନ୍ତି ଜଣେ ଯୁବକ ଓ ଯୁବତୀ । ସେମାନେ ସେଇ ବସ୍‌ରେ ଆସିଥିଲେ । ସେ ଆଶ୍ଚର୍ଯ୍ୟ ହେଲେ ।

ଏଇଠି ଏଇ ଆମ୍ବବାଗାନ ଛକରେ ସକାଳ ଠାରୁ ସଂଧ୍ୟା ଯାଏଁ ଦଶ ପନ୍ଦରଟା ଟେକ୍ସି ଓ ଅଟୋ ରିକ୍ସା ସବୁବେଳେ ଅପେକ୍ଷା କରି ରହୁଥିଲା । ଡ୍ରାଇଭରମାନେ ଡାକି ଉଛନ୍ନ କରି ପକାଉଥିଲେ । ଅଥଚ ଆଜି ଏ ଦରିଦ୍ର ଅବସ୍ଥା କାହିଁକି ? ମାତ୍ର ଗୋଟାଏ ଅଟୋ ରିକ୍ସା ? କୋଉଠି କିଛି ଗୋଳମାନ ହେଇ ଯାଇଚି ବୋଧେ ।

କିନ୍ତୁ ଆମ୍ବବାଗାନ୍‌ର ଚକଚକ୍ୟରେ ତ କୌଣସି ଅସୁବିଧା ହେଇନି ବରଂ ବଢ଼ିଚି । ଏଇଠି ଏଇ ଜାଗାରେ ଆଗରୁ ଥିଲା କେତେଟା ବରା, ପକୁଡ଼ି ଓ ସିଙ୍ଗଡ଼ା ଦୋକାନ । ଚା ବି ତିଆରି ହେଉଥିଲା । କି ଚମତ୍କାର ବରା । ଠେଲାରେ ବିକ୍ରି ଆରମ୍ଭ ହୁଏ ଦିନ ଚାରିଟାରୁ ସଂଧ୍ୟା ନଅଟା ଯାଏ । ଦୋକାନୀ ଅନୀଲ ଓ ତାର ଦୁଇଟା ସହକର୍ମୀଙ୍କୁ ଠିଆ ହେବାକୁ ବେଳ ନଥାଏ । ଭିଡ଼ ଯେ କାହିଁରେ କଅଣ । ସୁବ୍ରତବାବୁ ମନେପକେଇଲେ । କେତେ ଦିନର ପୁରୁଣା କଥା ଯେ ଆଉ ? ଦଶ ବର୍ଷରୁ ବେଶି ହେବ ନାହିଁ । ସେ ଛୁଟି ଦିନମାନଙ୍କରେ ତନୁଜାଙ୍କୁ ନେଇ ସଂଧ୍ୟାବେଳେ ସେଠି ଆସି ପହଞ୍ଚି ଯାଉଥିଲେ ଏବଂ ସଦ୍ୟ ଛଣା ଯାଇଥିବା ବରା ଓ ପକୁଡ଼ି ଗୋଟାଏ ପ୍ଲେଟ ଖାଇ ଦେଇ ହାକୁଟି ମାରି ମାରି ଯାଇ ସ୍କୁଟର ଷ୍ଟାଟ୍ କରୁଥିଲେ । ସେଦିନ ସୁବ୍ରତବାବୁ ରାତିରେ କେବଳ କ୍ଷୀର ଗ୍ଲାସଟିଏ ଛଡା ଆଉ କିଛି ପିଇ ନଥିଲେ ।

କିନ୍ତୁ ଇଏ କଅଣ ? ଆଜି ସେଇ ଆମ୍ବବାଗାନଟା ଏମିତି ଖାଁ ଖାଁ କାହିଁକି ଲାଗୁଚି ? ଅନୀଲର ସେ ଠେଲାଟା ଯାହା ସେ ବଡିଖୁଣ୍ଟ ଦେହରେ ଗୋଟାଏ କୁକୁର ଚେନରେ ବନ୍ଧା ହେଇ ଦିନଯାକ ପଡ଼ିରହୁଥିଲା ସେଇଟା ବିତ କାହିଁ ନାହିଁ । ଅଦୂରରେ ମାଉସୀମାଆ ବାଡ଼ିଟା ଅବଶ୍ୟ ବେଶ ସଜୀବ ଦେଖା ଯାଉଚି । ତା' ପାଖରେ କେତେଟା ଦୋକାନ ଗଢ଼ି ଉଠିଛି । ଅନୀଲ ତେବେ କୁଆଡ଼େ ଗଲା ? ଅନୀଲ ଖାଲି ସୁବ୍ରତବାବୁଙ୍କର ନୁହେଁ, ଇସ୍ପାତ ସହରର ବହୁ କର୍ମଚାରୀଙ୍କର ଅତି ପ୍ରିୟ ଥିଲା ତାର ହୋଟେଲ ପାଇଁ । ଟାଉନ୍‌ସିପ୍‌ର କନଷ୍ଟ୍ରକ୍‌ସନ୍ ଅଫିସ୍ ଥିଲା ସେତେବେଳେ ସବୁ ଅଫିସ୍‌ର ମୂଳ । ସେଇଠି ପାଞ୍ଚ ନମ୍ବର ସେକ୍ଟରରେ ଗୋଟାଏ ଗଛମୂଳରେ ସେ ଖୋଲିଥିଲା ହୋଟେଲ୍ । ମାଛଝୋଳ ତାର ବିଶେଷତ୍ୱ । କୋଉ ନାରୀର ହାତ ତା ପାସଙ୍ଗରେ ପଡ଼ିବ ? ସୁବ୍ରତ ଓ ତାଙ୍କର ବନ୍ଧୁ ବଂଧୁ ବହୁଦିନ ପର୍ଯ୍ୟନ୍ତ ଦିନରେ ସେଇ ହୋଟେଲରେ ଖାଆନ୍ତି ଓ ରାତିରେ ନିଜ ଘରେ ରାନ୍ଧନ୍ତି । ପରବର୍ତ୍ତୀ କାଳରେ କମ୍ପାନୀ ତାକୁ ସେଠୁ ଉଠେଇ ଦେଇ ଆଉ ଗୋଟାଏ ଅଫିସ କରିବ କହିବାରୁ ଅନୀଲ ଅନେକ ଦିନ ଯାଏଁ ବେକାର ହେଇ ବୁଲିଲା । ତା'ପରେ ପୁଣି ଚା, ଜଳଖିଆ ଦୋକାନ ଆରମ୍ଭ କଲା ଆମ୍ବବାଗାନ ଛକରେ । ସେଠିବି ତା ପାଖରେ ପ୍ରବଳ ଭିଡ଼ ।

କିନ୍ତୁ ଆଜି ପୁଣିଥରେ ସେ ଉଦ୍‌ବାସ୍ତୁ । ଆଜି ତା ଜାଗାରେ ଠିଆ ହେଇଛି ସୁନ୍ଦର ମାଉସୀ

ମାଆ ମନ୍ଦିର । ସେଥର କମ୍ପାନୀ ତାକୁ ତଡ଼ିଦେଲେ ଅଫିସ୍ କରିବା ପାଇଁ । ଏଥର ମନ୍ଦିର ତାକୁ ତଡ଼ି ଦେଲା ଦେବତାଙ୍କ ଘର ତିଆରି ପାଇଁ । ମଣିଷଟି ସବୁବେଳେ ଉଦବାସ୍ତୁ ହୁଏ । ତେବେ କଅଣ ମଣିଷ ଓ ଦେବତା ଉଭୟ ତା' ଉପରେ ଦାଉ ସାଧନ୍ତି ? ଦୁର୍ବଳ ମଣିଷଟି ସମସ୍ତଙ୍କର ଶତ୍ରୁ ?

ସୁବ୍ରତବାବୁ ଚାରିଆଡ଼କୁ ଗୋଟାଏ ହତାଶିଆଭାବ ନେଇ ଦେଖିଲେ । ନା - ତାଙ୍କୁ ନେବାକୁ କେହି ଆସି ନାହାନ୍ତି । କେମିତି ଆସନ୍ତେ ? ସେ କଅଣ କେବେ ଓ କେଉଁ ଗାଡ଼ିରେ ଆସିବେ ବୋଲି ଆଗରୁ ଜଣେଇ ଥିଲେ କି ?

ଆଜ୍ଞା କୋଉଠି କି ଯିବେ ? ପଚାରିଲା ଟେମ୍ପୋ ଡ୍ରାଇଭର ।

ହମିରପୁର । ତୁମେ କୁଆଡ଼େ ଯିବ ? କହିଲେ ସୁବ୍ରତ ।

ମୁଁ ଏମାନଙ୍କୁ ନେଇ ଯିବି ୨୦ ନମ୍ବର ସେକ୍ଟର । ଯଦି ଡେରି ହେବ ବୋଲି ଭାବୁଛନ୍ତି ତେବେ ଆମ ସାଙ୍ଗରେ ଆସନ୍ତୁ । ଏମାନଙ୍କୁ ଛାଡ଼ି ମୁଁ ଆପଣଙ୍କୁ ହମିରପୁର ନେଇଯିବି । ଆଉ କେତେ ବାଟ ଯେ ?

ଆଉ ଉପାୟ ନାହିଁ । ସୁବ୍ରତବାବୁ ଜିନିଷ ପତ୍ର ଓ ସୁଟକେଶ୍ ଟେମ୍ପୋକୁ ଉଠେଇଲେ । ଯୁବକ ଓ ଯୁବତୀ ଗୋଟାଏ ପାଖକୁ ଘୁଞ୍ଚି ଗଲେ । ସୁବ୍ରତ ବାବୁଙ୍କ ପାଇଁ ଜାଗା ଛାଡ଼ି ଦେଲେ ।

ଆଜି କଅଣ ହେଇଚି କି ? ଆଉ ଟେମ୍ପୋ ଟେକ୍ସି କଅଣ ନାହାନ୍ତି ?

ଏବେ ସହରଟା ସଫାସଫି ଚାଲିଚି । ଟେମ୍ପୋ ଡ୍ରାଇଭର ଆରମ୍ଭ କଲା । ଆପଣ ଦେଖୁ ନାହାନ୍ତି ଚାରିଆଡ଼େ କେମିତି ସଜାସଜି ଚାଲିଚି । ତେଣୁ ଅସ୍ଥାୟୀ ଭାବେ ଏଠୁ ଟେମ୍ପୋ ଟେକ୍ସି ସବୁ ଉଠେଇ ଦିଆଯାଇଚି । କାମ ସଇଲେ ସମସ୍ତେ ଆସିବେ, ଆଉ ଦଶ ଦିନ ଖଣ୍ଡେ ଲାଗିବ କହୁଛନ୍ତି ।

ବିଉଟିଫିକେସନ । ଏବର ସହରୀ ସଭ୍ୟତାରେ ବିଉଟିଫିକେସନ୍‌ର ଅର୍ଥ ଗରିବଙ୍କୁ ହଟାଅ, ଧନୀମାନଙ୍କୁ ଆଣ, ଝୁମ୍ପୁଡ଼ି ହଟାଅ, ତାରକା ହୋଟେଲ ବନାଅ । ସୁବ୍ରତ ତାକୁ ଚିନ୍ତା କଲେ ଏବଂ କହିଲେ ଏଇ କେତେ ଦିନ ସେମାନେ କଅଣ କରିବେ ? ତାଙ୍କ ରୋଜଗାର କେମିତି ହେବ ?

ସେ କଥା କିଏ ବୁଝୁଚି ? ଯୁବକଜଣକ କହିଲେ, ବିକଳ୍ପ ବ୍ୟବସ୍ଥା କଥା କହିଲେ ସେମାନେ କହିବେ ତୁମେ ବେଆଇନ ଭାବରେ ଏଠି ସ୍ଥାନ ଦଖଲ କରି ବସିଚ । ଉଚ୍ଛେଦ ପାଇଁ ସେମାନଙ୍କୁ କେତେ ସମୟ ଲାଗିବ ?

ସୁବ୍ରତବାବୁ ଯୁବକର ମୁଖର ଗମ୍ଭୀରତାକୁ ଲକ୍ଷ୍ୟ କରୁଥିଲେ । କେମିତି ଗୋଟାଏ ଅଶାନ୍ତ ଛାୟା ତାଙ୍କ ମୁଖମଣ୍ଡଳକୁ ଘେରି ରହିଥାଏ । କେତେ ହେବ ବୟସ ଏ ଯୁବକର ? ପଚିଶ ଛବିଶ । ତାଠୁ ବେଶି ହେବ ବୋଲି ମନେ ହେଉ ନାହିଁ । ଛୋଟ ଛୋଟ ଦାଢ଼ି ମୁହଁର ରୁକ୍ଷତାକୁ ଦ୍ୱିଗୁଣିତ କରି ଦେଉଥାଏ । ଚକ୍ଷୁ ସ୍ଥିର । ଯେମିତି ଅନେକ କିଛି ଖୋଜୁଚି । ପାଇବାକୁ ଆଶା କରୁଚି, ଅଥଚ ପାଉନି । ଅସ୍ଥିରତାର ଛାପ ବି ରହିଚି ମୁହଁରେ ।

ଆଉ ସେ ଯୁବତୀ ? ଅନେକ ହତାଶା ଓ ବ୍ୟର୍ଥତା ବସା ବାନ୍ଧିଥିବା ସେ ମୁହଁର ଔଜ୍ଜ୍ୱଲ୍ୟ କେମିତି ଗୋଟାଏ ଅନେକ ଦିନର ରୋଗୀର ଶେଥା ପଡ଼ିଥିବା ଦେହର ଚମ ପରି ବିବର୍ଣ୍ଣ । ଝିଅମାନଙ୍କର ବୟସ କଳିବା ସମ୍ଭବ ନୁହେଁ । ତଥାପି, ସୁବ୍ରତବାବୁ ଅନୁମାନ କରୁଥିଲେ ସେ ବି ପଚିଶ ଟପି ନଥିବ । ବିବାହର ସ୍ୱପ୍ନ ଦେଖିପାରୁ ନଥିବ ବାଳିକାଟି, ସେମିତିକି ଗୋଟେ ସ୍ୱପ୍ନ ସେ ନିକଟ ଭବିଷ୍ୟତରେ ମଧ୍ୟ ଦେଖିବ ବୋଲି ଆଶା କରୁ ନଥିବ । ଗୋଟାଏ ପୁଞ୍ଜିଭୂତ ଅସନ୍ତୋଷ ତାକୁ ଘେରି ରଖିଚି ।

ଆପଣମାନେ କୋଉଠୁ ଆସିଲେ ? ଏଠି କଅଣ ଆପଣଙ୍କ ଘର ?

ବାପା ମାଆ ଏଇଠି ଥାଆନ୍ତି । ଆମେ ଅଛୁ ସମ୍ବଲପୁରରେ । ଭଉଣୀ ଗୋଟାଏ ପ୍ରାଇଭେଟ ସ୍କୁଲରେ, ଆଉ ମୁଁ ଅଛି ଗୋଟାଏ ପ୍ରାଇଭେଟ୍ କମ୍ପାନୀରେ । କହିଥିଲେ ଯୁବକ ।

ସୁବ୍ରତବାବୁ ଉଲୁସି ଉଠିଲେ । ଏଇ ସମୟରେ ସେ ତାଙ୍କ ପୁଅ ଝିଅ କଥା ମନେ ପକେଇଲେ । ସେମାନେ କେତେ ଭଲରେ ଅଛନ୍ତି ।

"ବାପାଙ୍କର ହଠାତ ଦେହାନ୍ତ ହେଇଗଲା । ବର୍ତ୍ତମାନ ମାଆ ଏକୁଟିଆ । ଆମେ ସେଇ ଖବର ପାଇ ଆସିଛୁଁ ।"

I am sorry. ମୁଁ ତୁମକୁ କେମିତି ସମବେଦନା ଜଣେଇବି ? ବାପା ଥିଲେ ସେଲ୍‌ରେ । ଦଶ ବର୍ଷ ତଳେ ରିଟାୟାର କରିଥିଲେ । ବୟସ ଅବଶ୍ୟ ସେମିତି କିଛି ହେଇ ନଥିଲା । କିନ୍ତୁ ଅବସର ପରେ ସବୁ ରୋଗ ତାଙ୍କୁ କେମିତି କେଜାଣି ଆକ୍ରମଣ କରିଥିଲା । ଗତ ସପ୍ତାହରେ ଆମେ ଆସି ଦେଖି ଯାଇଥିଲୁ । ସେ ବେଶ୍ ସୁସ୍ଥ ହୋଇ ଉଠିଥିଲେ । ଆମର ଅଧିକ ରହିବାକୁ ଇଚ୍ଛା ଥିଲେ ମଧ୍ୟ ସେତକ ସମ୍ଭବ ହେଲା ନାହିଁ । ତା ଚାକିରିତ ସିମୁଳିତୁଳା । ଆଉ ମୋ କଥା ଛାଡ଼ନ୍ତୁ । ସେ ଟିକିଏ ନିରବ ରହିଗଲେ । ତା ପରେ କହିଲେ ଆପଣତ ଆଜିକାଲି ପ୍ରାଇଭେଟ୍ ଚାକିରି ମାନେ ବୁଝୁଥିବେ । ଆପଣ ଦେଖନ୍ତୁ ମୁଁ B.E ପାସ୍ କରିଚି ଏଇ ରିଜିଓନାଲ ଇଂଜିନିୟରିଂ କଲେଜରୁ । ଆଉ ଇଏ M.A M Ed. କିନ୍ତୁ ତାର ବା କଅଣ ମୂଲ୍ୟ ଅଛି ଏ ଯୁଗରେ । ଶୁଣି

ଆଶ୍ଚର୍ଯ୍ୟ ହେବେ ଯେ ଆମ ଦୁଇ ଜଣଙ୍କ ଆପଏଣ୍ଟମେଣ୍ଟ ମୌଖିକ ଆଦେଶରେ । ଯୁବକ ମୁହଁ ତଳକୁ କଲେ । ତାଙ୍କ ସ୍ୱର ଆସ୍ତେ ଆସ୍ତେ ବ୍ୟବସ୍ଥା ବିରୋଧୀ ହେଇ ଉଠୁଥିଲା ।

ମୌଖିକ ଆଦେଶରେ ? ତେବେତ ସର୍ଭିସ କଣ୍ଡିସନ ବୋଲି କିଛି ନ ଥିବ ?

ସେ ପ୍ରଶ୍ନ ଉଠୁନି । ଏଇ ଯେ ଆଗରେ ବାଁକୁ । ସେ ଡ୍ରାଇଭରକୁ କହିଲେ । ସୁବ୍ରତବାବୁ ସ୍ତମ୍ଭୀଭୂତ ହେଇ ଗଲେ । ସେ ଆଉକିଛି ପଚାରିବା ପୂର୍ବରୁ ସେମାନଙ୍କ ଘର ଆସିଯାଇଥିଲା । ସେମାନେ ଓହ୍ଲେଇ ଗଲେ । ଅଟୋ ରିକ୍ସା ବୁଲିଲା ।

ଆମେ କୋଉଠି ଆସି ପହଞ୍ଚିଲୁଣି ? ସୁବ୍ରତବାବୁ ଭାବୁଥିଲେ । ଏ ଦେଶକୁ ଗ୍ଲୋବାଲାଇଜେସନ ଆସିଲା ପରେ କି ଅଧୋଗତି ଆମର । ଘରୋଇ କମ୍ପାନୀର ଶୋଷଣକୁ ରୋକିବା ପାଇଁ ଯୋଉ ଜାତୀୟକରଣର ଯୁଗ ଆରମ୍ଭ ହେଇଥିଲା ପଚାଶ ଦଶକରେ, ତାର ଫଳ କଅଣ ଗୋଟିଏ ପୁରୁଷରେ ଶେଷ ହେଇଗଲା ? ଏବେତ ସେମାନଙ୍କୁ ଶୋଷଣ ପାଇଁ ଲାଇସେନ୍ସ ଦେଇ ଦିଆଯାଉଛି । ଆମେ କଅଣ ଏବେ ପୁଣିଥରେ ପ୍ରାକ୍ ସ୍ୱାଧୀନତା ଯୁଗକୁ ଫେରୁଛୁ । "ଇଂରେଜମାନେ ସେତେବେଳେ ତନ୍ତୀମାନଙ୍କ ଆଙ୍ଗୁଳି କାଟି ଦେଉଥିଲେ । ଆଉ ଆଜି ଘରୋଇକରଣର ମାଲିକମାନେ ଆମ ଲୋକଙ୍କ ତଣ୍ଟି କାଟି ଦେଉଛନ୍ତି ? ତେବେ ଦେଶ ଏବେ ସ୍ୱାଧୀନ ନାଁ ପରାଧୀନ ? ଆମେ କଅଣ ଏକ ଛାୟା ପରାଧୀନତା ଆଡ଼କୁ ଆଗେଇ ଚାଲିଛୁ "ଏବେ ଇଷ୍ଟ ଇଣ୍ଡିଆ କମ୍ପାନୀ ନ ଆସି ଓ୍ୱେଷ୍ଟ ଇଣ୍ଡିଆ କମ୍ପାନୀ ଆସୁଛି । BE ପାସ୍ କରି ଯୁବକ ପ୍ରାଇଭେଟ୍ କମ୍ପାନୀରେ 1 ନେହରୁ ଲିଗେସି ଯାଇଚି । ପବ୍ଲିକ୍ ସେକ୍ଟର ଆଉ ଲୋକଙ୍କ ପାଖରେ ଆଉ ଠିଆହେଇପାରୁନି ? ସେ ନିଜେ ଘୁଞ୍ଚିଯାଇ ପ୍ରାଇଭେଟ୍‌କୁ ଜାଗା ଛାଡ଼ି ଦେଉଛି । କେତେ ପାଉଥିବ ସେ ଯୁବକଟି ? ହଜାରେ ନା ଦି' ହଜାର ?

ଆଉ ତା ଭଉଣୀ ? ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡ଼ିଗ୍ରୀ ପାଇ ରହିଛି ଗୋଟାଏ ପ୍ରାଇଭେଟ୍ ସ୍କୁଲରେ ? ଶିକ୍ଷାର ମୂଲ୍ୟ କମିଚି ନା ଆମ ଯୋଜନାର ମୂଲ୍ୟ କମିଚି / କେତେ ଶୀଘ୍ର ମଣିଷ କେତେ ତଳକୁ ଖସିଯାଉଚି ।

ସୁବ୍ରତବାବୁଙ୍କ ମୁଣ୍ଡ ଗୋଳମାଳ ହେଇ ଯାଉଥିଲା ।

ଦୁଇ ଦିନ ହେଲା ଘନକୁ ମୋଟେ ବେଳ ନାହିଁ । ତିନିଜଣ ଅଫିସ୍ କର୍ମଚାରୀ ରାତି ଦିନ ଲାଗିଛନ୍ତି କାମରେ । କୋଉଠୁ ଡ଼େକୋରେଟର ଆସିବ, କୋଉଠୁ କେଟରର ଆସିବ, କୋଉଠୁ ଆତ୍ମୀୟ ସ୍ୱଜନମାନେ ଆସିବେ, କିଏ କେତେବେଳେ ଆସିବ ଓ କୋଉଠି ରହିବ, ସେମାନଙ୍କର ଚର୍ଚ୍ଚା କିପରି ହେବ । କେତେ ଗାଡ଼ି ସଜ ହେବ । କୋଉ ଗାଡ଼ିରେ କିଏ କିଏ ବସିବ, ପ୍ରସେସନ

କେମିତି ହେବ, ବରଯାତ୍ରୀରେ କୋଉମାନେ ଯିବେ ଠାରୁ ଆରମ୍ଭ କରି ବାହାଘର ପରେ ରିସେପ୍‌ସନ୍ କେମିତି ହେବ । ସେ ଜାଗାର ଡେକୋରେସନ୍ କେମିତି ହେବ ଏବଂ ଶେଷରେ କିଏ କେବେ, କେତେବେଳେ ଯିବ ପୁଣି ଟ୍ରେନ୍‌ରେ ନା ବସ୍‌ରେ ସେ ସମସ୍ତ କଥା ସେମାନେ ଘନ ସହିତ ପରାମର୍ଶ କରି ତାଲିକା ପ୍ରସ୍ତୁତ କରୁଛନ୍ତି । ପ୍ରତ୍ୟେକଙ୍କ ହାତରେ ଦୁଇ ଦୁଇଟା ମୋବାଇଲ୍ । ମୋବାଇଲ୍ ଯେମିତି ଅବିଶ୍ରାନ୍ତ ଚାଲିଚି, ଲୋକମାନେ ସେମିତି ଅବିଶ୍ରାନ୍ତ ଚାଲିଛନ୍ତି ।

ଘନ କହି ଦେଇଚି ସବୁ କାମ ଠିକାରେ ହେବ ବୋଲି ଆମେ ଯେ ନିଶ୍ଚିନ୍ତ ହେଇ ଯିବା ତାହା ଠିକ୍ ନୁହେଁ ।

ସମସ୍ୟା ଥରେ ଆସିଲା ଯେତେବେଳେ ଘନର ପୁଅ କହିଲା କଲିକତାର ଡେକୋରେଟରକୁ ମୁଁ କହି ଦେଇଚି ଶହେ ଜଣ ବରଯାତ୍ରୀ ମଧ ସେ ଦେବ । ଏଥିରେ ଆମର ଝାମେଲା କମ୍ । ଦାୟିତ୍ୱ ମଧ କମ୍ । ନାଚିବା ଓ ପିଇବା ଏବେ ପ୍ରସେସନର ଗୋଟାଏ ପ୍ରଧାନ ଅଂଗ ହେଇ ଥିବାରୁ ସେ କାମ ସେ କରୁ । ଆମ ଲୋକମାନେ ଖାଲି ଦେଖୁଥିବେ ।

କଥାଟା ଘନ ମନକୁ ପାଇଲାନି । ସେ କହିଲା ଆନନ୍ଦ ଅନ୍ୟମାନେ କରିବେ ଆଉ ଆମେ ଖାଲି ଉପଭୋଗ - ଏଇଟାକୁ ପସନ୍ଦ କରିପାରୁନାହିଁ ।

ଠିକାରେ ଯେ ବରଯାତ୍ରୀ ମିଳୁଛନ୍ତି ଏକଥା ଘନ ମଧ ଜାଣି ନଥିଲା । ଘନ କହିଲା ଏଥିରେ ଆନନ୍ଦ ମିଳିବ ନାହିଁରେ ପୁଅ । ଆମେ ଆମ ଲୋକଙ୍କୁ ହିଁ ଏଥିରେ ସାମିଲ କରିବା ।

ପୁଅ ପୁଣି କଥାଟାକୁ ବିରୋଧ କଲା । ସେ କହିଲା ବରଯାତ୍ରୀରେ ଯେଉଁମାନେ ଠିକାରେ ଆସିବେ ସେମାନେ ସମସ୍ତେ ଟ୍ରେଣ୍ଡ । ସିନେମାରେ ଯୋଉ ଗ୍ରୁପ ଡାନ୍ସ ହୁଏ ଏମାନେ ସେଇ ଲୋକ । ରାସ୍ତା ଉପରେ ଥରେ ଏମାନେ ଡାନ୍ସ ଆରମ୍ଭ କରି ଦେଲେ ସାରା ସହର କମ୍ପି ଉଠିବ । ହଜାର ହଜାର ଲୋକ ଜମି ଯିବେ ଏ ଦୃଶ୍ୟ ଦେଖିବାକୁ । ତା ଛଡ଼ା ବଡ଼ କଥା ହେଲା ଏମାନେ ସେଠି ଖାଇବେନି । ବରକୁ ପହଞ୍ଚାଇଲା ପରେ ତାଙ୍କ କାମ ଶେଷ ।

(୨)

ଘନ ପୁଅର ବାହାଘର ସେ ଦିନ ବଡ଼ ଜାକଜମକରେ ହେଇଗଲା । ଏତେ ଲୋକ ଆସିଲେ ଗଲେ, ଏତେ ଲୋକ ଖାଇଲେ ତାର ହିସାବ କରିପାରୁ ନଥିଲେ ସୁବ୍ରତ । କାରଖାନାର ଏମିତି କେହି ବଡ଼ ଅଫିସର ନାହିଁ ଯେ କି ଭୋଜିସଭାକୁ ଆସି ନଥିଲେ । ଘନ କଥା ଅନୁସାରେ,

ପ୍ରାୟ ସମସ୍ତେ ଆସିଥିଲେ । ସବୁ ସରକାରୀ ଅଫିସର ମଧ୍ୟ ସପରିବାର ଆସିଥିଲେ । ନ ଆସନ୍ତେ କେମିତି ? ଘନର ସମସ୍ତଙ୍କ ସହିତ ସଦ୍‌ଭାବ । ସମସ୍ତେ ଆସି କରମର୍ଦ୍ଦନ କରୁଥାଆନ୍ତି । ସମସ୍ତଙ୍କ ହାତରେ ଖଣ୍ଡେ ଖଣ୍ଡେ ନୀଳ ଲଫାପା । ପୁଅବୋହୂ ପୋତିହୋଇ ପଡ଼ିଲେ ଉପହାରରେ । କେତେଥର ଯେ ସେ ସବୁକୁ ଗୋଟିଏ ସୁସଜ୍ଜିତ ଝୁଡ଼ିରେ ଉଠା ହେଉଛି ଘର ଭିତରକୁ ତାର ସୀମା ନାହିଁ । ଦୁଇଜଣ ତାଲିକା ପ୍ରସ୍ତୁତ ପାଇଁ ନିଯୁକ୍ତ ହୋଇଥିଲେ ।

ଘନ କହିଲା ଡ଼େକୋରେଟର ଆସିଚି କଲିକତାରୁ । ଆଉ କେଟରର ଆସିଚି ଲକ୍ଷ୍ନୌର କେଟରର ଭାରତର ବଡ଼ ବଡ଼ ଲୋକଙ୍କ ପାର୍ଟି ଆୟୋଜନ କରେ । ତାର ଗୋଟାଏ 'ବି' ଟିମ୍ ଅଛି । ତାର ପ୍ରିପାରେସନ ସବୁ ବାଦଶାହୀ ଢାଞ୍ଚାରେ ।

ଏଥିରେତ ଅନେକ ଖର୍ଚ୍ଚ ହୋଇଥିବ ରେ ଘନ ?

ସେ କଥା ଆଉ ପଚାରନା । ମୁଁ ପାଞ୍ଚ ହଜାର ଲୋକଙ୍କ ପାଇଁ ଆୟୋଜନ କରିଥିଲି । ପରେ ଦେଖିଲି ତାହା ଆହୁରି ହଜାରେ ଦି' ହଜାର ବଢ଼ିଗଲା । ମୁଁ କାହାକୁ ମନା କରିବି କହିଲ । ଖାଲି ମୋର ୱାର୍କର ସଂଖ୍ୟାତ ଅଢେଇ ହଜାର । ଗୋଟିଏ ବୋଲି ତ ପୁଅ । ପୁଅ ବି ସେଇ, ଝିଅବି ସେଇ । ମୋ ଜୀବନରେ ସେଇ ଗୋଟିଏ ବାହାଘର । ଆଉ ଦ୍ୱିତୀୟ ହେବ ନାହିଁ । ତେଣୁ ହାତକୁ କେତେ ମୁଠା କରି ପାରିବିକୁହ ? ବନ୍ଧୁ ବାନ୍ଧବ ମଧ୍ୟ ସମସ୍ତେ ଆଉଥରେ ଆସିପାରିବେ ନାହିଁ । ତମ ଝିଅମାନେ ନ ଆସିବା ଦ୍ୱାରା ମୋର ଏ କାମରେ କି ସୁଖ କହିଲ ? ଖୁଡ଼ୀ ମଧ୍ୟ ଆସିଲେ ନାହିଁ ।

ବାପା ଘନ, ସୁବ୍ରତବାବୁ କହିଲେ, ସବୁ କଥାକୁ ଧରନ୍ତି ନାହିଁ । ଆଜିକାଲି ଯୋଉ ଅବସ୍ଥା, ସେଥିରେ ମୁଁ ମଲାବେଳକୁ ମୋ ପୁଅଝିଅକୁ ଦେଖି ପାରିବାର ଆଶା ଅଛି କିରେ ? ସେଦିନ ଗଲାଣି । ଏବେତ ବାପ ମଲେ ପୁଅ ନଣ୍ଡା ମଧ୍ୟ ହେଉନି । ବିଦେଶକୁ ଫେରିଲା ବେଳେ ଟା ଚେହେରା ସହିତ ତା ଫଟୋ ମିଶିବ ନାହିଁ ବୋଲି ତାକୁ ଏରାଡ୍ରମରେ ଅଟକାଇ ଦେବେ । ପାସ୍‌ପୋର୍ଟ ମଧ୍ୟ ଜବତ୍ ହୋଇଯାଉଚି ।

ଘନ କହିଲା ହଁ ସେ କଥା ଠିକ୍ । ମୋ ପୁଅ ବାହାଘର ପ୍ରସ୍ତାବ ଯେତେବେଳେ ପଡ଼ିଲା ଝିଅର ବାପ କ'ଣ କହିଲେ ଜାଣ ? କହିଲେ କୋଷ୍ଠି ନେଇ କଅଣ କରିବ ? ପ୍ରଥମେ ରକ୍ତ ପରୀକ୍ଷା କରାଅ । ସେଇଟା ଅସଲ । ଜାତକରେ କଅଣ ଅଛି ? ମିଛରେ ମନକୁ ଭୁଆଁ ବୁଲେଇବା କଥା । ମୋର ତ ଦାଦା ତୁମେ ଜାଣ, ଜାତକରେ ପୂରା ବିଶ୍ୱାସ । ମୁଁ ଜାଣେ ରକ୍ତରେ କଅଣ ଅଛି ସେ କଥା ଜାତକରେ ବି ମିଳିଯିବ, ଯଦି ଭଲ ଜ୍ୟୋତିଷ ହାତରେ ପଡ଼େ । ତୁମେ ବିଶ୍ୱାସ

କର ଦାଦା ଏମିତି ଗଣକ ଅଛନ୍ତି ସେମାନେ କମ୍ପ୍ୟୁଟରର ଗଣନାକୁ ଭୁଲ ବୋଲି ପ୍ରମାଣିତ କରି ଦେଇଛନ୍ତି ।

ତୁ ତେବେ କଅଣ କଲୁ ? ସୁବ୍ରତବାବୁ ପଚାରିଲେ ।

କରିବି ଆଉ କଅଣ ? ଏତେ ବଡ଼ ଲୋକର କଥାକୁ ଟାଳିପାରିବି ? ଏତେ ବଡ଼ ଅଫିସର । ମୁଖ୍ୟମନ୍ତ୍ରୀଙ୍କ ଖାସ୍ ଲୋକ । ପୂରା ବିଶ୍ୱାସ ତାଙ୍କ ଉପରେ । ଆଉ ବର୍ଷେ କେତେ ମାସ ତାଙ୍କର ଚାକିରି । ତା ପରେ ସେ ରାଜନୀତିକୁ ଆସି ମନ୍ତ୍ରୀ ହେବେ । ମୁଖ୍ୟମନ୍ତ୍ରୀ ତାଙ୍କୁ କଅଣ କହୁଥିଲେ ଜାଣ ? କହିଲେ ଏ ଲୋକ ଗୁଡ଼ାକ ମୋତେ ଭଣ୍ଡି ଦଉଛନ୍ତି । ତୁମେ ମନ୍ତ୍ରିମଣ୍ଡଳ ଭିତରକୁ ଆସିଗଲେ ମୋର ଆଉ ଚିନ୍ତା ନଥିବ । ସତରେ ଆମ ମୁଖ୍ୟମନ୍ତ୍ରୀଟା ବଡ଼ ସରଳିଆ ଲୋକ । ତୁମେ ତ ତାଙ୍କୁ ତିନି ବର୍ଷ ହେଲା ଦେଖୁଚ । ଗୋଟାଏ ନୀତି ଉପରେ ଅଛନ୍ତି ବୋଲି ତାଙ୍କ ଉପରେ ଏତେ ବିଶ୍ୱାସ ।

ତୋର ଭାଗ୍ୟଟା କେତେ ଟାଣରେ ଘନ । କହିଲେ ସୁବ୍ରତ ।

ସେଇଟା ଠିକ୍ କଥା । ସେଇଟା ଟାଣ ନଥିଲେ ଆଜି କଅଣ ଏକଥା ସମ୍ଭବ ହୁଅନ୍ତା । ତୁମେ କଅଣ ଜାଣିନ ଦାଦା । ତୁମରି ଆଗରେ ସବୁ ଘଟିଚି । ହେଇତ ସେଦିନ- ମୁଁ ଯୋଉ ଦିନ ଏଠି ଆସି ପ୍ରଥମେ ପହଞ୍ଚିଲି ମୋ ହାତରେ ଥିଲା ଗୋଟିଏ ଟିଣ ସୁଟ୍‌କେସ୍, କାନ୍ଧରେ ଖଣ୍ଡେ ଖୋର୍ଦ୍ଧା ଗାମୁଛା ଓ ହାତରେ ବିଡ଼ାଏ ଶାହାଡ଼ା ଦାନ୍ତକାଠି । ଆଜିବି ସେ ସୁଟ୍‌କେସ୍ ଓ ଗାମୁଛା ମୁଁ ସାଇତି ରଖିଚି । କେତେ ବର୍ଷ ବା ଯିବା ଭିତରେ କଟିଚି ? ଏଇ ୨୫ କି ୩୦ ବର୍ଷ ହେବ । ସବୁ ତାଙ୍କରି ଦୟା । ମୁଁ କଅଣ କିଛି କରିଚି ନା କିଛି ଜାଣେଁ ? ଘନ ଆଖି ବୁଜି ହାତ ଦି'ଟାକୁ ଟେକିଦେଲା ।

ତୁମେ ମୋ ପୁଅ କଥା କହୁନ ? ସେ ଏମିତି ଗୋଟାଏ କଅଣ କି ? ହେଲା ଏବେ ସେ ବୁର୍ଲାରୁ ଇଂଜିନିୟରିଂ ପାସ୍ କରିଚି । ସେ ଗୋଟେ ଅଡ଼ିନାରୀ କଲେଜରୁ MBA ମଧ କରିଚି । ଏଇଟା କଅଣ ଇମିତି ଗୋଟାଏ କଥା ଯେ ଯାହା ପାଇଁ ତାକୁ ଏତେ ବଡ଼ ଲୋକଟିଏ ଝିଅଦେବାକୁ ପଦେ କଥାରେ ରାଜି ହେଇଯିବେ ? ସେ ଚାହିଁଥିଲେ IAS କି IPSଟିଏ ପାଇ ନ ଥାଆନ୍ତେ କି ? ନା, ତାଙ୍କର ଉଦ୍ଦେଶ୍ୟ କଅଣ ଜାଣିଚ ? ସେ କହୁଛନ୍ତି ଆମ ଦେଶର ରାଜନୀତି ଏବେ ଏତେ ପଙ୍କିଳ ହେଇ ଗଲାଣି ଯେ ସେଥିରେ ଏ ଦେଶରେ ଆଉ ଚଳି ହେବ ନାହିଁ । ଏବେ ପ୍ରତ୍ୟେକ ସୁନାଗରିକର ପ୍ରଥମ ଓ ପ୍ରଧାନ କାମ ହେଲା ରାଜନୀତିର ଏ ପୋଖରୀରୁ ପଙ୍କୋଦ୍ଧାର କରିବା । ସେ ତ କହୁଛନ୍ତି ବାଜେ ଲୋକଗୁଡାକୁ ଏଥିରୁ ନ ହଟେଇଲେ ଆଉ ରକ୍ଷା ନାହିଁ । ତାଙ୍କ ଦୂରଦୃଷ୍ଟିକୁ ଦେଖ ।

ସୁବ୍ରତବାବୁ ଦେଖିଲେ ଘନ ଏ କଥା କହିଲା ବେଳେ ତାର ଆଖି ଉଜ୍ଜ୍ୱଳି ଉଠୁଥିଲା । ଗୋଟାଏ ବିରାଟ ସ୍ୱପ୍ନ ଯେମିତି ତା ଆଖି ଆଗରେ ଭାସି ଉଠୁଥିଲା । ସୁବ୍ରତବାବୁ ଦେଖିଲେ ସେ ସ୍ୱପ୍ନର ରଙ୍ଗରେ ତାଙ୍କ ନିଜର ଓ ନିଜ ପୁଅ ଝିଅମାନଙ୍କ ସ୍ୱପ୍ନର ରଂଗ ଯେମିତି ମଳିଚିଆ ହେଇ ଉଠୁଚି । କେମିତି ଆସ୍ତେ ଆସ୍ତେ ଶ୍ରୀହୀନ ହେଇ ଉଠୁଛି । ସେ ଯେ ଏ ଯାଏଁ ଭାବି ଆସିଥିଲେ, ସେ ହିଁ ସୌଭାଗ୍ୟର ଶିଖରକୁ ଚଢ଼ିଯାଇପାରିଛନ୍ତି, ତାଙ୍କ ବଂଶର ମୁଖ ଉଜ୍ଜ୍ୱଳ ସେ ହିଁ କେବଳ କରାଇପାରିଛନ୍ତି ଏବଂ ତାଙ୍କର ସେ ସୌଭାଗ୍ୟର ଶେଷ ରେଖାକୁ ଡେଇଁ ଆଉ କେହି ଆଗକୁ ବଢ଼ି ପାରି ନାହାନ୍ତି, ବଂଶର କଥା ଖାଲି ନୁହେଁ, ତାଙ୍କ ସାଙ୍ଗସାଥୀ ଓ ବନ୍ଧୁ ବାନ୍ଧବ ମଧ ନୁହେଁ - ଆଜି ତାହା ଭୁଲ୍ ବୋଲି ପ୍ରମାଣିତ ହେଇଗଲା । ତାଙ୍କର ମନେ ହେଉଥିଲା ହିମାଳୟ ହିଁ ପୃଥିବୀର ଉଚ୍ଚତମ ଶୃଙ୍ଗ ବହନ କରେ । ସେ ଶୃଙ୍ଗର ଉଚ୍ଚତାକୁ କେହି ମାପିପାରି ନାହିଁ କି ତାକୁ କେହି ସ୍ପର୍ଶ ମଧ କରିପାରି ନାହିଁ ।

ସେ ଧାରଣା ଆଜି ତାଙ୍କର ମିଥ୍ୟା ପ୍ରମାଣିତ ହେଇ ଗଲା । ଉଚ୍ଚତମ ଶୃଙ୍ଗର ବରଫ ତରଳିଲା ପରେ ତା'ର ଉଚ୍ଚତା ଯେ ଅନେକ ତଳକୁ ଖସି ଆସେ ଏ କଥା ସେ ଜାଣି ନଥିଲେ । ସେ ମଧ ଜାଣି ନଥିଲେ ମିଛ ବିଶ୍ୱାସ ବରଫ ପାହାଡ଼ର ଶୃଙ୍ଗ ପରି । ସାମାନ୍ୟ ଉତ୍ତାପ ପାଇଲେ ତାହା ତରଳି ଭୂଇଁରେ ଲୋଟି ପଡ଼େ । ତା'ର ସତ୍ତା ବି ଲୋପ ପାଇଯାଇପାରେ ।

ସୁବ୍ରତ ବାବୁ ଏମିତି ଏକ ମିଛ ବିଶ୍ୱାସକୁ ପୁଞ୍ଜି କରି ଏଯାଏ ମାଙ୍କଡ଼ ଡିଆଁ ମାରୁ ଥିଲେ ? ସେ କେତେ ବୋକା ସତେ ?

ଘନ ଠାରୁ ଏସବୁ ଶୁଣିଲା ବେଳେ ତାଙ୍କ ଭିତରେ ଗୋଟାଏ ଅହେତୁକ ଜ୍ୱଳନ ସୃଷ୍ଟି ହେଉଥିଲା । ସେ ଭାବୁଥିଲେ ଘନ ତାଙ୍କୁ ପ୍ରତିଯୋଗିତାରେ ଟପିଯାଉଚି କି ? ଏବଂ ସେଇ କଥା ସୂଚାଇ ଦେବାକୁ ଘନ ଏମିତି କଥାଟାକୁ ବନେଇଚୁନେଇ ଏବଂ ବଡ଼ ଟାଣ ଦେଇ କହୁଚି କି ? ବେଳେ ବେଳେ କଥାଟା ତାଙ୍କ ଦେହରେ ଫୋଡ଼ି ହେଲାପରି ଲାଗୁଚି । ସେଇଟା ଫୋଡ଼ି ହେଲା ବେଳେ ରକ୍ତ ମଧ ଝରୁଚି ଏବଂ କଷ୍ଟ ହେଉଚି । ତାକୁ ସେ ସହ୍ୟ କରିପାରୁ ନାହାନ୍ତି । କିନ୍ତୁ ସହ୍ୟ ନ କରି ଉପାୟ କଅଣ ଅଛି ?

ଘନବାବୁ କହିଲେ ପୁଅର ବିବାହକୁ ୧୩ ଜଣ ମନ୍ତ୍ରୀ ଓ ଉପମନ୍ତ୍ରୀ ଏବଂ ୨୫ ଜଣ ବିଧାୟକ ଓ ସାଂସଦ ଆସିବେ ବୋଲି କହିଥିଲେ । ତଥାପି ଅଧାରୁ ବେଶି ଆସିଥିଲେ । ବାକି ଯେଉଁମାନେ ଆସିନାହାନ୍ତି ସେମାନେ ଫୋନ୍ କରିଥିଲେ । ମୋ ପାଇଁ ସମସ୍ତେ ସମାନ । ଯିଏ ଆସୁ ବା ନ ଆସୁ । ପୁଅ-ବୋହୂକୁ ଆଶୀର୍ବାଦ ପଠେଇଲେ ହେଲା । ମୋର ଆଉ କଅଣ ଦରକାର ? ମୁଁ ତ ଭାବିଚି ଏଣିକି ପୁଅ ବୋହୂକୁ ସବୁ ଦାୟିତ୍ୱ ଦେଇ ମୁଁ ରାଜନୀତିରେ ଯୋଗ

ଦେବି । ସତରେ ସମୃଦ୍ଧି ଯାହା କହୁଛନ୍ତି ଠିକ୍ । ସାଧୁ ସଚ୍ଚୋଟ ଲୋକ ରାଜନୀତିରେ ନ ରହିଲେ ଦେଶ ଧ୍ୱଂସ ହେଇଯିବ । ତୁମେତ ଦେଖୁଚ ଦୁର୍ନୀତି କେମିତି ଦେଶରେ ହୁ ହୁ ବଢୁଛି ।

ପୁଅ ପରା କହୁଚି ସେ କାରଖାନାଟିଏ ଖୋଲିବ ? କହିଲେ ସୁବ୍ରତ ଖୋଲୁ । ସେଥିରେ ମୋର କଅଣ ଯାଏ ଆସେ ? ସେ ତ ବଣେଇ ପାଖରେ ଦୁଇ ହଜାର ଏକର ଜମି ପାଇସାରିଚି । ବଣେଇ ଭଳି ଅନୁନ୍ନତ ଅଞ୍ଚଳରେ କାରଖାନାଟି ବସେଇଲେ ଆଦିବାସୀମାନେ ବେଶି ଉପକୃତ ହେବେ । ବୋହୂ ବି ତ MBA ପାସ୍ କରିଚି । ଏଣିକି ତାଙ୍କ କଥା ସେମାନେ ବୁଝନ୍ତୁ । ଏଣିକି ସେ ଦାୟିତ୍ୱ ସମୃଦ୍ଧିଙ୍କର । ମୋର ଆଉ କଅଣ ଅଛି ।

ସୁବ୍ରତବାବୁ ଥମକି ରହିଗଲେ । କେତେ ବଡ଼ ବଡ଼ କଥା କହୁଚି ଘନ । ଚନ୍ଦ୍ରକୁ ହାତ ବଢ଼ାଇସାରିଲାଣି । ଉପରମହଲରୁ ସମୃଦ୍ଧୀଟିଏ ପାଇଯାଇଚି ବୋଲି ସେ ଏବେ ଇନ୍ଦ୍ର ଚନ୍ଦ୍ରଙ୍କୁ ଅକ୍ତିଆର କରିନେବ କହୁଚି । ଯୋଉ ଘନ ଆଦ୍ୟ କାନ ତରାଟି ଜୀବନରେ ତିନିଥର ଆରେଷ୍ଟ୍ ହେଇ ଜେଲ୍ ଯାଇଥିଲା, କାରଖାନାର କେତେ ମାଲ ତା' ଗୋଦାମରୁ ଜବତ ହେଇଥିଲା ତାର ସୀମା ନାହିଁ, ସେ ଆଜି ସାଧୁତା, ସଚ୍ଚୋଟତା ଓ ନୈତିକତା କଥା କହୁଚି । ଏଇଟା ତ ଏକମାତ୍ର କାରଣ ଯାହା ପାଇଁ ତା' ସହିତ ସୁବ୍ରତବାବୁଙ୍କ ପରିବାରର ସଂପର୍କ ସେମିତି ଘନିଷ୍ଠ ନ ଥିଲା । ନାଁକୁ ସମ୍ପର୍କଟାଏ ଥିଲା । ଏଠୁ ଚାଲିଗଲା ପରେ ସେ ସଂପର୍କ ଏକଦମ୍ କଟିଯାଇଥିଲା କହିଲେ ଚଳେ ।

ଏବେ ଗତ କେତେ ବର୍ଷ ହେଲା ଘନର ବ୍ୟବସାୟ ଯେମିତି ବଢ଼ିଚି ତା'ର ସମ୍ମାନର ସମ୍ପର୍କ ମଧ ସେମିତି ବଢ଼ିଚି । ଏବେ ତ ଆମେ ଏମିତି ଗୋଟେ ଦୁନିଆରେ ପଶିଛୁଁ ଯେଉଁଠି ଯାହାର ଅର୍ଥ ଯେତିକି ସେ ସେତିକି ସମ୍ମାନର ଅଧିକାରୀ । ହଜାର ହଜାର କୋଟି ଟଙ୍କାର ଠକେଇ ମାମଲାରେ ହର୍ଷଦ ମେହେଟା ଯେତେବେଳେ ଜେଲ୍‌ରୁ ଜାମିନରେ ଖଲାସ ହେଇ ଆସିଲେ ସେତେବେଳେ ତାଙ୍କୁ ଅଭ୍ୟର୍ଥନା ଜଣେଇବା ପାଇଁ ଜେଲ୍ ଫାଟକରେ ହଜାର ହଜାର ଲୋକ ଗୁଣ୍ଡ ହେଇ ଯାଇଥିଲେ । କାହିଁ ତାଙ୍କର ଅପକୀର୍ତ୍ତି ପାଇଁ ନିନ୍ଦା କରିବାକୁ ଦୁଇ ତିନି ଜଣ ଲୋକ ମଧ ଏକାଠି ହେଇ ନଥିଲେ । ଏବେବି ରାଜନୀତିରେ ଯେଉଁମାନେ ଅଛନ୍ତି ବା ନାଁ କରିଛନ୍ତି ସେମାନଙ୍କ ଭିତରୁ କାହା ଦେହରେ ଦୁର୍ନୀତିର ଛାପ ନ ପଡ଼ିଚି ? କିଏ ଚୋରି ନ କରିଚି ? କିଏ ଖଜଣା ଟିକସ ଫାଙ୍କି ନ ମାରିଚି ? ଏବଂ କିଏ ଅସତ୍ ଉପାୟରେ ଅର୍ଥ ସଞ୍ଚୟ ନ କରିଚି ? ଆମ ଦେଶର ସାଧୁତାର ହିମାଳୟ ଅସାଧୁତାର ଭିତ୍ତିଭୂମି ଉପରେ ହିଁ ଗଢାଯାଏ । ଆମ ଦେଶରେ ଦେଶ ସେବାର ପାହାଡ଼ ଅନୈତିକତାର ମୂଳଦୁଆ ଉପରେ ହିଁ ତିଆରି ହୁଏ । ଏହାହିଁ ଆମ

ରାଜନୈତିକ ସଂସ୍କୃତି । ତାକୁ ଛାଡ଼ି ଆଉ ବାଟ ନାହିଁ । ଏଇଟା ହିଁ ଆମ ଦେଶର ବଡ଼ଲୋକୀ ସଂସ୍କୃତି । କେବଳ ବଡ଼ଲୋକମାନେ ହିଁ ଜାଣିଶୁଣି ଅପକୀର୍ତ୍ତି ଅର୍ଜିବାକୁ ସାହସ କରନ୍ତି । ଏସବୁ ସାଧାରଣ ଲୋକ କରିପାରନ୍ତି ନାହିଁ । ବଡ଼ ଲୋକମାନେ କରିବାକୁ ସାହସ କରନ୍ତି । ବଡ଼ଲୋକ ଅପକୀର୍ତ୍ତି ସହିତ ଜଡ଼ିତ ହେଲେ ତାଙ୍କୁ ଆଇନ ମଧ୍ୟ ବାଟ ଛାଡ଼ି ଦିଏ ।

ଘନ ଆଜି ବେଶ୍ ବଡ଼ଲୋକ ହେଇ ଯାଇଚି । ତା'ର ବିଜିନେସର ସାମ୍ରାଜ୍ୟ ସାରା ପ୍ରଦେଶକୁ ମାଡ଼ିଗଲାଣି । ବହୁ ଜାଗାରେ ତା'ର ବ୍ୟବସାୟିକ କୋଠା/ଅଫିସ୍ । ଖାଲି ଯେ ଇସ୍ପାତ କାରଖାନାରେ ସେ କାମ କରୁଛି ତା ନୁହେଁ ଓଡ଼ିଶା ସରକାରଙ୍କର ରୋଡ଼, ବିଲଡ଼ିଂ, ପୋଲ ସବୁ କାମରେ ଥାଏ ।

ନରି ଉପରେ ଜଣେ ସାଧୁ, ସଚ୍ଚୋଟ ଏବଂ ନୀତିବାଦୀ ମଣିଷ । କିନ୍ତୁ ଭିତରେ ?

ଆଜି ଯେଉଁମାନଙ୍କର ଦାଢ଼ି ଅଛି ସେମାନେ ସାଧୁ ନୁହଁନ୍ତି । ଯେଉଁମାନେ ପ୍ରବଚନ ଦିଅନ୍ତି ସେମାନେ ସନ୍ନ୍ୟାସୀ ନୁହଁନ୍ତି । ସେମାନେ ସବୁ ଆଉ କିଛି । ସାଧୁତା, ସତ୍ୟ ଓ ଧର୍ମ ଏସବୁ ଆଜି ଗୋଟାଏ ଗୋଟାଏ ଛଳନାତ୍ମକ ଶବ୍ଦ । ବିରାଡ଼ି ବୈଷ୍ଣବମାନଙ୍କର ନାମାମାଳି । ତାକୁ ନ ଦେଖିଲେ ଲୋକେ ଭୁଲିବେ କେମିତି ? ଅତି ସହଜ ଓ ସରଳ କଥାରେ ଲୋକଙ୍କୁ ଭଣ୍ଡି ପାରୁଥିବା ଲୋକ ହିଁ ପ୍ରକୃତ ଦେଶସେବୀ । ସେ ଚୋରି କରିଥିଲା, ସେଥିରେ କାହାର କଅଣ ଯାଏ ? ସେ ନରହତ୍ୟା ଓ ଡ଼କାୟତି ମାମଲାରେ ଜେଲ ଯାଇଥିଲା, ତା ସହିତ ଆମର କଅଣ ସଂପର୍କ ? ସେ ଦୁର୍ନୀତି ଅପରାଧରେ ଅପରାଧୀ, ତାର ଅର୍ଥ ନୁହେଁ ଯେ ସେ ଦେଶ ସେବା କରି ପାରିବ ନାହିଁ । ଏ ମାନସିକତା ଆଜି ମଣିଷ ଭିତରେ ପ୍ରଧାନ ହେଇଠିଆ ହେଇଚି ।

ଆଜି ଲୋକେ ଅର୍ଥକୁ ସମ୍ମାନ ଦିଅନ୍ତି । ତାର ଚରିତ୍ରକୁ ନୁହେଁ । ଆଜି ଅସାଧୁତା ହିଁ ସାଧୁତାର ମାପକାଠି । ଅଜ୍ଞତା ହିଁ ଜ୍ଞାନର ମାନ ଦଣ୍ଡ ଏବଂ ଚରମ ଶଠତା ହିଁ ରାଜନୀତିର ମୁଖଶାଳା ।

ଘନ ସେଥିରୁ ବାଦ୍ କେମିତି ପଡ଼ିବ ? ଘନ ତାର ବ୍ୟତିକ୍ରମ ନୁହେଁ । ଘନ ସେଇ ନେତିବାଚକ ଅସ୍ତିତ୍ୱର ଜୟଗାନ କରୁଚି । ସେ ତାକୁଇ ଦେଖି ମୁଗ୍ଧ ହେଇଯାଇଚି ।

ଘନର ତିନିଟା ମୋବାଇଲ ଫୋନ । ସେ ଯୋଉ ଅଧ ଘଣ୍ଟା ବସି ସୁବ୍ରତବାବୁଙ୍କ ସହ କଥା ହେଲା ତା ଭିତରେ ୧୦/୧୨ ଥର ଫୋନ୍ ଆଟେଣ୍ଡ୍ କରିଥିଲା । ସୁବ୍ରତବାବୁ ତା ପ୍ରତି ମନେ ମନେ ହିଂସା କରୁଥିଲେ ମଧ୍ୟ ଦ୍ୱିତୀୟ ଚିନ୍ତାରେ ଭାବୁଥିଲେ ଆସନ୍ତା କେତେ ବର୍ଷ ଭିତରେ ଘନର ଭାଗ୍ୟ କୋଉ ଶିଖରରେ ପହଞ୍ଚିବ କେଜାଣି । ସତକୁସତ ଯଦି ସେ ତାର ସମୃଦ୍ଧିର

ସହାୟତାରେ MLA କି MPଟିଏ ହେଇଯାଏ ଏବଂ ତାର ସମୃଦ୍ଧି ମୁଖ୍ୟମନ୍ତ୍ରୀଙ୍କ ଆଶୀର୍ବାଦରୁ କେବିନେଟ୍ ର୍ୟାଙ୍କ୍‌ର ମନ୍ତ୍ରୀଟିଏ ହେଇଯାଇପାରେ, ତେବେ ଆଉ ବାକି କଅଣ ରହିଲା ? କ୍ଷମତା ମଣିଷକୁ କଅଣ ଦେଇନପାରେ ? ସର୍ଗର ଇନ୍ଦ୍ରତ୍ୱ ଆଉ କେତେ ବାକି ? ଆଉ ଅତି ନିକୁଛରେ ଘନ ଯଦି ଏମ୍.ପି.ଟିଏ ହେଇଯାଏ ସେ ବର୍ଷକୁ ପାଇବ ଦୁଇ କୋଟି । କେତେ ଥର ମାଗଣାରେ ଉଡ଼ାଜାହାଜରେ ଉଡ଼ିପାରିବ ? ତିରିଶ ଥର ନା ଚାଳିଶ ଥର ? କିଏ କହୁଥିଲା ସେ ସସ୍ତ୍ରୀକ ଫରେନ୍ ଯାଇ ହେଲଥ୍ ଚେକ୍ ଅପ୍ ମଧ କରି ପାରିବ । ହେଇତ ସେଦିନ ଜଣେ ମନ୍ତ୍ରୀଙ୍କ ଦେହ କଅଣ ଟିକେ ଖରାପ ହେଲା ଯେ ତାଙ୍କୁ ଦିଲ୍ଲୀରୁ ଗୋଟିଏ ସତନ୍ତ୍ର ଆମ୍ବୁଲାନ୍ସର ଉଡ଼ାଜାହାଜଟିଏ ଆସି ପାଟନାରୁ ଦିଲ୍ଲୀ ନେଇଗଲା ।

ଘନ ଏବେ ସେଇ ସୌଭାଗ୍ୟର ଶୀର୍ଷକୁ ଉଠିବା ସପ୍ନ ନେଇ ମସଗୁଲ । ସତରେ ତା ଭାଗ୍ୟରେ ଏମିତି ଥିଲା ? ପୁଅ ଓ ବୋହୂ ଦୁହେଁ ଓଡ଼ିଶାର ବିଶିଷ୍ଟ ଶିଳ୍ପପତି ତାଲିକାରେ ନାଁ ଲେଖେଇଲା ବେଳକୁ ବାପ ତେଣେ ମନ୍ତ୍ରୀ ନଚେତ ଅତି ନିକୁ:ରେ ଏମ୍.ପି.ଟିଏ ହେଇ ଯାଇଥିବ ।

ଏ ଏମ୍.ପି. ପଦଟାରେ ଏମିତି କଅଣ ଥାଏ ଯେ ? ଭାରତର ସବା ଆଗ ଧାଡ଼ିରେ ବସୁଥିବା ଶିଳ୍ପପତିମାନେ ସାଂସଦଟିଏ ହେବା ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରି ଦିଅନ୍ତି । ବଡ଼ ବଡ଼ ଶିଳ୍ପପତିମାନଙ୍କ ମାସିକ ଦରମା କୁଆଡ଼େ ତିନି/ଚାରି କୋଟି । ତେବେ ସାଂସଦ ହେଇ ଦଶ/ପନ୍ଦର ହଜାର ପାଇବାକୁ କାହିଁକି ସେମାନେ ଲାଳାୟିତ ହେଇ ଉଠନ୍ତି ? ବଡ଼ ଆଶ୍ଚର୍ଯ୍ୟ ! କାହିଁ କେହିତ ତାଙ୍କୁ ଏ ପ୍ରଶ୍ନ କେବେ ପଚାରି ନାହିଁ ? ଆମ ଭୋଟରମାନେ ଏ ପ୍ରଶ୍ନ ପଚାରିବା ଉଚିତ ନୁହେଁ ?

ତୋ' ଭାଗ୍ୟଟା ବଥ ଟାଣରେ ଘନ । କହିଲେ ସୁବ୍ରତବାବୁ ।

ସେସବୁ ତୁମମାନଙ୍କର ଆଶୀର୍ବାଦ । ବାପ-ଦାଦାଙ୍କର ଆଶୀର୍ବାଦ ନଥିଲେ ଜଣେ ଉପରକୁ ଉଠିପାରେ ନାହିଁ ।

କଅଣ କହୁଚି ଘନ ? ବାପ-ଦାଦାଙ୍କ ଆଶୀର୍ବାଦ ? ବାପ-ଦାଦାଙ୍କ ଆଶୀର୍ବାଦରୁ ଘନ ଅସାଧୁତାର ଠିକାଦାର ହେଇଚି ? ଆଶୀର୍ବାଦରୁ ଅସତ୍ୟର ଅଧିକାରୀ ହେଇପାରେ ଜଣେ ? ଆଶୀର୍ବାଦ ତେବେ ଗୋଟାଏ ନକରାତ୍ମକ ଶବ୍ଦ ?

ଅବଶ୍ୟ ଏ ପରିବର୍ତ୍ତିତ ଯୁଗରେ ଆଶୀର୍ବାଦର ଅର୍ଥ ଅସତ୍ ଉପାୟରେ ପ୍ରଚୁର ରୋଜଗାର । କ୍ଷମତାର ଆଶୀର୍ବାଦ ନ ଥିଲେ ଜଣେ ଯଶର ସୋପାନକୁ ଚଢ଼ିପାରେ ନାହିଁ ।

ପୁଣି ଫୋନ୍ ଆସିଲା । ଘନ ଏଥର କଥା ହେଇସାରି ସୁବ୍ରତବାବୁଙ୍କୁ କହିଲା ବାହାଘର

ଝାମେଲାରେ ମୁଁ ତୁମ ସହିତ ଦି'ପଦ ଭଲରେ କଥା ହେଇପାରି ନାହିଁ । ତୁମେ ପାଞ୍ଚ/ସାତ ଦିନ ରୁହ ଏଠି । ଟିକିଏ ଭଲ ବୁଲାବୁଲି କର । ତୁମ ସାଙ୍ଗସାଥୀଙ୍କ ଘରକୁ ମଧ୍ୟ ଯାଅ । ସେମାନଙ୍କୁ ଅନେକ ଦିନୁ ଦେଖିନ, ନାତିବୋହୂ ପରଷା ବି ଟିକିଏ ଖାଅ । ଘରକୁ ଯିବାକୁ ଏତେ ବ୍ୟସ୍ତ କାହିଁକି ? ଯଦି କହିବ ଖୁଡ଼ୀଙ୍କୁ ଏଠିକୁ ଡ଼କାଇ ଦେବା । ତାଙ୍କ ଆଣ୍ଠୁର ଦରଜଟା ଏଇଠି IGHରେ ପରୀକ୍ଷା କରାଇ ନେବା ।

ତୁ ଆଉ ସେ କଥା କହନାରେ ଘନ । ତୋ' ଖୁଡ଼ୀ ଏବେ ନାତି କଥା ଭାବୁଥିବ । ସେ ଏବେ ଏଠିକୁ ମୋଟେ ଆସିବ ନାହିଁ । ନାତି ନ ଆସିଲେ ସେ ହୁଏତ ନାତି ପାଖକୁ ଚାଲିଯିବ । ଦେଖିବା, ଆମେ ଆଉ କେତେବେଳେ ଆସିବନି ?

(୩)

ଯୋଉଦିନ ଘନଘରେ ଗୋଟାଏ ପ୍ରାର୍ଥନାସଭା ବସିବାର ଥିଲା ଏବଂ ଯୋଉ ପ୍ରାର୍ଥନାସଭାରେ ସୁବ୍ରତବାବୁଙ୍କର ମଧ୍ୟ ଯୋଗଦେବାର ଥିଲା ଅତିଥି ହିସାବରେ ଠିକ ସେଇ ଦିନର ଘଟଣା । ଘଟଣାଟିକୁ ଘଟଣା ନ କହି ବରଂ ଦୁର୍ଘଟଣା କହିବା ଠିକ୍ ହେବ । କାରଣ ଘଟଣା କେତେ ଜଣଙ୍କ ପାଇଁ ସୁଖପ୍ରଦ ହେଉଥିଲା ବେଳେ ସେଇ ଘଟଣା ମଧ୍ୟ ଆଉ କେତେ ଜଣଙ୍କ ପାଇଁ ଦୁଃଖଦ ହେଇଥାଏ । ତେଣୁ ଏଇ ଘଟଣାଟି ମୋଟ୍ କଥାରେ କହିବାକୁ ଗଲେ ଏକପ୍ରକାର ମିଶ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଦଳେ ଖୁସି ହେଇଥିଲା ବେଳେ ଆଉ ଦଳେ ଦୁଃଖରେ ଭାଙ୍ଗି ପଡ଼ିଥିଲେ ।

ଘନଘରର ଉପରମହଲାରେ ଯୋଉ ଖୁବ୍ ବେଶି ବଡ଼ ନୁହେଁ କି ଖୁବ୍ ବେଶି ଛୋଟ ନୁହେଁ କୋଠରିଟି ଅଛି ତାକୁ ପୂଜା ହଲ୍ ବୋଲି ସମସ୍ତେ ଜାଣିଥିଲେ ମଧ୍ୟ ସୁବ୍ରତ ବାବୁ ଜାଣି ନଥିଲେ । ଗତ ସାତଦିନ ଭିତରେ ସେ ବାହାଘର ଭିଡ଼ ଭିତରେ ଥିବାରୁ ଠିକ୍ ତାଙ୍କ ଉପରଘରେ କଅଣ ଅଛି ସେ କଥା ସେ ଜାଣିବାର ସୁଯୋଗ ପାଇ ନଥିଲେ । ପ୍ରାର୍ଥନାସଭା ହେବାର ଆଗ ଦିନହିଁ ତାଙ୍କୁ କୁହାଯାଇଥିଲା ଏଥିରେ ଉପସ୍ଥିତ ରହିବା ପାଇଁ । ସୁବ୍ରତ ସହଜେ ଟିକିଏ ଧର୍ମଭୀରୁ । ଠାକୁର ଦେବଦେବୀ, ପ୍ରାର୍ଥନା ଓ ପୂଜା ଯଜ୍ଞାଦିରେ  ତାଙ୍କର ଖୁବ୍ ବିଶ୍ୱାସ । ତେଣୁ ସେ ଦିନ ଜଣେ ବହୁ ପୁରୁଣା ବଂଧୁଙ୍କ ଘରେ ଖାଇବାର ଯୋଜନାଟିକୁ ବାତିଲ କରି ପ୍ରାର୍ଥନାସଭା ପାଇଁ ରାଜି ହେଇଥିଲେ ।

ସଭା ଆରମ୍ଭ ହେବାକୁ ଯାଉଚି, ଲୋକ ଦଶ/ ପନ୍ଦର ପରିବାର ସହ ଆସି ଗଲେଣି ।

ହଲ ଖୋଲା ଯାଇ ସେ'ଠି ଧୂପଝୁଣା ଇତ୍ୟାଦି ଦିଆସରିଲାଣି । ମହ ମହ ବାସନାରେ ଘର କମ୍ପୁଚି । ଏତିକି ବେଳେ ପ୍ରଦୀପବାବୁ ମାନେ ପ୍ରଦୀପ ମହାପାତ୍ର ଘନର ଘର ସାମ୍ନାରେ ଗେଟ୍ ପାଖରେ କାର ରଖି ତରତରରେ ଭିତରକୁ ଆସିଲେ । ତାଙ୍କୁ ଏକୁଟିଆ ଦେଖି ଘନ ପାଟି କଲା, ଏକୁଟିଆ କଅଣ ପ୍ରଦୀପ ଭାଇନା ? ଭାଉଜ କାହିଁ ? ପ୍ରଦୀପବାବୁ କାନ୍ଦି ପକେଇଲେ । କହିଲେ ଭାଉଜ ନାହିଁରେ ଘନ । ସେ କାଲିରାତିରୁ ମୋତେ ଛାଡ଼ି ପଳେଇଚି 'ଦିବ୍ୟ ଭୂମିକୁ' । ଖାଲି ଖଣ୍ଡେ ଚିଠି ଯାହା ଲେଖି ଦେଇଯାଉଚି । ମୁଁ ତାକୁ ପାଇଲି ଏଇ ଘଣ୍ଟାଏ ଆଗରୁ । ନେ ପଢ଼ ।

"ମୁଁ ଚାଲିଯାଉଚି । ମୋତେ ଖୋଜିବନି । ସେଠାକୁ ଯାଇ ମୋତେ ଆଣିବାକୁ ଚେଷ୍ଟା କଲେ ମଧ୍ୟ କିଛି ଫଳ ହେବନି । ଶେଷ ଜୀବନ ପର୍ଯ୍ୟନ୍ତ ତୁମର ସେବା କରିପାରୁ ନଥିବାରୁ କ୍ଷମା ମାଗୁଛି । ଯଦି ତୁମେ କେବେ ସେଠାକୁ ଆସ ତେବେ ଦେଖା ହେଇ ପାରେ ।"

ଇତି , ଶ୍ରୀମୟୀ

ଘନ କହିଲା ତୁମେ କଥାଟାକୁ ଖୁବ୍ ବେଶି ସିରିଅସ୍‌ଲି ନିଅନା । ବାବାଙ୍କ ସାନିଧ ମିଳିଥିଲେ ଏମିତି ବେଳେ ବେଳେ ଗୋଟାଏ ମୁହୂର୍ତ୍ତ ଆସେ । ସେ ମୁହୂର୍ତ୍ତରେ ମଣିଷ ନିଜକୁ ସେଇ ପରମପୁରୁଷ ଠାରେ ସମର୍ପି ଦେଇଥାଏ । ସେ ସମୟଟା କଟିଗଲେ ସେ ପୁଣି ଫେରି ଆସିବେନି ? ସେ ଦୁଇହାତ ଟେକି ମୁଣ୍ଡରେ ଲଗାଇଲା ।

ପ୍ରଦୀପବାବୁ କହିଲେ ତୋ' ପାଇଁ ହୁଏତେ କଥାଟା ଠିକ୍ । କିନ୍ତୁ ମୁଁ ? ମୁଁ ଏବେ କଅଣ କରିବି ? ପୁଅତ ଆଗରୁ ଯାଇଚି । କି ଗୋଟାଏ ମୋହରେ ଆମେ ତାକୁ ସେତେବେଳେ ଦିବ୍ୟଭୂମିର ସ୍କୁଲକୁ ପଠାଇଲୁ ଯେ, ସେ ଏବେ ଆମଠାରୁ ପୂରା ଅଲଗା ହୋଇଗଲା । ମୁଁ ସେତେବେଳେ ଅବଶ୍ୟ ଖୁବ୍ ଗୋଟାଏ ରାଜି ନଥିଲି । କିନ୍ତୁ ତୁ ତ ଜାଣୁଁ ସବୁ କଥା, ଶ୍ରୀମୟୀର ଜିଦ୍ ପୁଅ ଉପଯୁକ୍ତ ଶିକ୍ଷା ପାଇପାରିବ । ମଣିଷ ହେବ । ଜୀବନକୁ ତିଆରି କରିପାରିବ । ଆଉ ସେତେବେଳେ ତୁମେମାନେ ମଧ୍ୟ ତାକୁ ସମର୍ଥନ ଦେଲ । ଆଉ ମୁଁ ବି କଥାଟାକୁ ବିଶ୍ୱାସ କରିଗଲି ।

"ସେ କଥା କଅଣ ହେଇ ନାହିଁ କି ଭାଇନା ? କଲ୍ଲୋଳ ଆଶ୍ରମ ସ୍କୁଲ୍‌ରେ ଶିକ୍ଷା ପାଇ ଏବେ ଆମେରିକାରେ ଦିବ୍ୟଭୂମି କଲେଜରେ ପଢୁଚି ।"

"ସେ ଫେରି ଆସିଲେ କୋଉ କୂଳକୁ ଲାଗିବ ? ଆମ କୂଳ ନା ତାଙ୍କ କୂଳ ? ମୋର ତ ସେଇ ଗୋଟିଏ ବୋଲି ପିଲା । ପାଶ୍ଚାତ୍ୟର ଇଂରାଜୀ ଶିକ୍ଷା ଆଉ ଭାରତୀୟ ଚିନ୍ତନରୁ ଯୋଉ ସନ୍ନ୍ୟାସୀ ଭାବ ତା'ର ଥିବ ସେଥିରେ ସେ ଆମ ବଂଶର ବୋଲି ପରିଚୟ ଦେବ କି ? ସେ ତା' ବାପ -ମାଆର ଶ୍ରାଦ୍ଧ ଦେବ ? ମୁହଁରେ ନିଆଁ ଦେବାକୁ ତ ନଥିବ । ସେ ଯଦି ମୋର ନୁହେଁ, ମୁଁ

ଯଦି ତା'ର ନୁହେଁ ତେବେ ଆମ ଧର୍ମରକ୍ଷା କେମିତି ହେବରେ ଘନ ?"

ସେ କଇଁ କଇଁ ହେଇ କାନ୍ଦି ଉଠିଲେ ।

ସୁବ୍ରତ ତାଙ୍କୁ ସାନ୍ତ୍ୱନା ଦେଲେ । ଆହା ଧୈର୍ଯ୍ୟ ଧରନ୍ତୁ । ଏଇଟା ସେମିତି କିଛି କଥା ନୁହେଁ ଯୋଉଥିରେ ଜଣେ ଅଧୈର୍ଯ୍ୟ ହେଇପଡ଼ିବ । ଆପଣଙ୍କ ପୁଅ କିଛି ଖରାପ କାମ କରି ନାହିଁ, ସମାଜରେ ନିନ୍ଦିତ ହେଇ ନାହିଁ ଯୋଉଥି ପାଇଁ ଆପଣ ଦୁଃଖ କରିବେ । ଆଉ ଆପଣଙ୍କ ସ୍ତ୍ରୀ ମଧ - ପୁଅର ଅନୁପସ୍ଥିତି ତାଙ୍କୁ ବାଧିଥିବ । ସେ ଯେ ଫେରି ଆସିବେ ନାହିଁ ସେମିତି କିଛି କଥା ନାହିଁ ।

ଆମେ ଚେଷ୍ଟା କଲେ ହେବ ନାହିଁ ଘନ ? ପୁଅ ପାଇଁ ତାଙ୍କ ହୃଦୟ ଯେତିକି ବ୍ୟସ୍ତ ବ୍ୟାକୁଳ ହେଇଚି, ଆପଣଙ୍କ ଅଭାବରେ ସେ ସେତିକି ବ୍ୟସ୍ତ ହେବେ । ସେତେବେଳେ ଫେରି ନଆସି ଯିବେ କୁଆଡ଼େ ? ଘନ ତାଙ୍କୁ ସାନ୍ତ୍ୱନା ଦେଲା ।

ମୋ ସ୍ତ୍ରୀ ମୋତେ ଛାଡ଼ି ପଳେଇଚି ଏ କଥାରେ ଯେତେ ନୀତି ଓ ଆଦର୍ଶ ବା ଧାର୍ମିକ ଧ୍ୟାନ ଧାରଣା ଥିଲେ ମଧ ମୁଁ କାହାକୁ ଏକଥା କହି ପାରିବି ? ଏ ଚିଠିଟା ମୁଁ କାହାକୁ ଦେଖେଇ ପାରିବି ? ସେମାନେ ଜିରାରୁ ଶିରା କାଢ଼ିବେ ନାହିଁ ? ତୁ ଯାହାକୁ ଭଲ ବୋଲି କହୁଚୁ ସମସ୍ତେ ତାକୁ ଭଲ ବୋଲି କହନ୍ତି ନାହିଁ । ପ୍ରଦୀପଙ୍କ ଗଳା ତଥାପି ଘାଗଡ଼ା ଶୁଭୁଥିଲା ।

ଭାଇନା ତୁମେ ମୋତେ ବ୍ୟସ୍ତ ହୁଅନା । ଟିକେ ଧୈର୍ଯ୍ୟ ଧର । ମୁଁ ଆଜି ଫୋନ୍‌ରେ ଆଶ୍ରମର ଚିଫ୍ ଆଡ଼ମିନିଷ୍ଟ୍ରେଟର ଶାନ୍ତନୁ ମୁଖାର୍ଜୀଙ୍କ ସହିତ କଥାବାର୍ତ୍ତା କରୁଚି । ଭାଉଜ ତ ଏ ଯାଏଁ ପହଞ୍ଚି ନଥିବେ । ତାଙ୍କୁ ଫେରେଇ ଆଣିବା ଦାୟିତ୍ୱ ମୋର । ଘନ କହିଲା ।

ତୁ ମୋତେ ପାରିବୁନି । ସେ କଲିକତାରୁ ସକାଳ ଫ୍ଲାଇଟ୍‌ରେ ଭୋପାଳ ଯାଇଥିବେ ଏବଂ ସେଠୁ ତାଙ୍କୁ ଆଶ୍ରମକୁ ନେବାକୁ ଗାଡ଼ି ଆସିଥିବ । ଏସବୁ ଆରେଂଜମେଣ୍ଟ ଯଦି ଆଗରୁ ହେଇଥିବ ତେବେ ୧୫୦ କିଲୋମିଟର ଦୂର ଅଭୟାରଣ୍ୟ ଜଙ୍ଗଲ ଭିତରକୁ ଯିବାକୁ ତାଙ୍କୁ କେତେ ସମୟ ଲାଗିବ । ତା'ଛଡ଼ା ଦିନକୁ ହଜାର ହଜାର ଭକ୍ତ ଏବେ ସେଠାକୁ ଯାଉଛନ୍ତି । ବାବାଙ୍କ ନିର୍ଦ୍ଦେଶମତେ ପୁଷ୍ପଗିରି ପାହାଡ଼ରୁ ବାହାରିଥିବା ଝରଣାରେ ଚୈତ୍ର ପୂର୍ଣ୍ଣିମାର ସୂର୍ଯ୍ୟୋଦୟ ସମୟରେ ସ୍ନାନ କଲେ କୁଆଡ଼େ ପୁତ୍ର ସନ୍ତାନ ଅନିବାର୍ଯ୍ୟ । ସେ ଅବସ୍ଥାରେ ଶ୍ରୀମୟୀ ମହାପାତ୍ରଙ୍କୁ ପାଇବା କଅଣ ସହଜ ? ତା'ଛଡ଼ା ସେ'ଠି ସେ ନିଜ ନାଁ ବଦଳେଇ ଦେଇଥିବେ । ଆଶ୍ରମର ସେବିକା ହେବାକୁ ହେଲେ ଏହା ଆବଶ୍ୟକ । ମୁଁ ଶୁଣୁଚି ସେ'ଠି ଶହ ଶହ ମହିଳା କାମ କରୁଛନ୍ତି ।

ଘନ ତଳକୁ ମୁହଁ ପୋତିଲା । ହୁଏତ ସେ ଭାବୁଥିଲା ତା'ପରେ ଆଉ କଅଣ କହି ହେବ ।

ସେ ହୁଏତ ଭାବୁଥିଲା ସେ ଗୋଟାଏ ମାଛି । ବୁଢ଼ିଆଣୀ ଜାଲରେ ପଡ଼ି ଛଟପଟ ହେଉଥିଲା ପରି ସେ ମଧ୍ୟ ଛଟପଟ ହେଉଛି । କେମିତି ମୁକୁଳିବ ?

ତାକୁ ନିରବ ରହିବାର ଦେଖି ପ୍ରଦୀପ ପୁଣି କହିଲେ ମୋ ଜୀବନର ସମସ୍ତ ସଞ୍ଚୟ ସେ ନେଇ ପଳାଇଚି, ଘନ । ମୋର ଆଉ ଅଛି କଅଣ ? ଖୁବ କମ୍‌ରେ ଶହେ ଭରି ସୁନା ଅଳଂକାର ଓ ତା' ସହିତ ତା' ନାମରେ ଥିବା ପ୍ରାୟ ପାଞ୍ଚ ଲକ୍ଷ ଟଙ୍କା । ରିଟାୟାର କଲା ପରେ ମୋର ଯାହାକିଛି ସଂଚୟ ଥିଲା ମୁଁ ତାକୁ ତା' ନାମକୁ ଟ୍ରାନ୍ସଫର କରିଦେଲି କେବଳ ଗୋଟିଏ ଉଦ୍ଦେଶ୍ୟରେ ଯେ ଏଥିରେ କିଛି ଅଧିକ ଇନକମ୍ ଟେକ୍ସ ରିହାତି ମିଳିବ । କିନ୍ତୁ ...

ସେ ପୁଣି କାନ୍ଦିଲେ । ତା'ପରେ କହିଲେ ସେ ଯଦି ସବୁଯାକ ଗହଣା ଓ ଟଙ୍କା ଆଶ୍ରମକୁ ଦାନ କରି ଦେଇଥିବ ? ପୂର୍ବରୁ ଯଦି ସେମିତି ଯୋଜନା କିଛି ହେଇଥାଏ । ସେ ଟିକିଏ ରହିଗଲେ ଏବଂ ତାପରେ କହିଲେ ବାବା କୁଆଡ଼େ ତାକୁ କହିଥିଲେ ଯେ ତୁମେ ଆଶ୍ରମରେ ଯୋଗ ଦେଲେ ତୁମକୁ ଆମେରିକା ପଠେଇ ଦିଆଯିବ । ସେଠି ତୁମେ ଓ ତୁମ ପୁଅ ଦୁହେଁ ସେଠାକାର ଆଶ୍ରମ ଦାୟିତ୍ୱରେ ରହିବ । ମୁଁ ଏବେ ବୃନ୍ତଚ୍ୟୁତ ହେଇଗଲି । ସେ ଦୁଇ ହାତ ପାପୁଲି ମୁହଁରେ ଜାକି କାନ୍ଦି ଉଠିଲେ ।

ଘନ ତାଙ୍କୁ ବୁଝେଇଲା । ସେ କହିଲା ମୁଁ ଯେତେଦୂର ଜାଣେ ଆଶ୍ରମରେ ସେମିତି କିଛି ଅନ୍ୟାୟ କାମ ହେବ ନାହିଁ କି ବାବା କୌଣସି ଅନୈତିକ କାମକୁ ପ୍ରଶୟ ଦିଅନ୍ତି ନାହିଁ । ସେ'ଠି ନୀତିନିୟମ ସବୁ ଅତି କଠୋର । ଆଉ ତା'ଛଡ଼ା ତୁମେ ଯେ କହୁଚ ଗହଣା ଓ ଟଙ୍କା ଆଶ୍ରମ ନେଇଯିବ, ମୁଁ ଏଥିରେ ବିଶ୍ୱାସ କରେ ନାହିଁ । ସେପରି କିଛି ହେଲେ ମଧ୍ୟ ତାକୁ ଫେରାଇ ଆଣି ହେବ । ତେବେ ତୁମେ ତ କେତେଥର ଆଗରୁ କହୁ ଥିଲ ଏକମାତ୍ର ପୁଅ ଯଦି ଯାଇ ସେ'ଠି ରହିଲା ତେବେ ଆମର ମଧ୍ୟ ଆଉ ଏ'ଠି ରହିବାର ଆବଶ୍ୟକତା କଅଣ ? ସବୁ ସମ୍ପତ୍ତି ତୁମେ ଆଶ୍ରମକୁ ଦେବ କହୁଥିଲ । ତମ ପାଇଁ ସେ'ଠି ଗୋଟିଏ କୋଠରୀର ଘର ହେଲେ ଚଳିବ ବୋଲି କହୁଥିଲ । ବାବାଙ୍କ ସେବାରେ ଜୀବନ ବିତାଇବ ବୋଲି ଭାଉଜଙ୍କୁ କହିଥିଲ ।

ପ୍ରଦୀପବାବୁ କହିଲେ ମୁଁ ଜାଣେ ତୁ ତ ଏଇନେ ସବୁ ଦୋଷ ମୋ ଉପରେ ଲଦି ଦେବୁ । ମୁଁ କଅଣ କରିବି କହ ? ସେତେବେଳେ ସାରା ସହର ବାବାଙ୍କ ପାଇଁ ଉଠୁଥିଲା ପଡୁଥିଲା । ବାବା ମଧ୍ୟ ଶୂନ୍ୟରୁ ଆଣି କଥା ସବୁ କହୁଥିଲେ । ସେଥିରେ ସମସ୍ତେ ପାଗଳ । ତୁ କଅଣ ଭୁଲିଗଲୁ କି ବାବାଙ୍କ ମନ୍ଦିର ତିଆରି ପାଇଁ ସେତେବେଳେ ଯେମିତି ସମସ୍ତେ ଦରମାର ଏକ-ଚତୁର୍ଥାଂଶ ଦେବେ ବୋଲି ଲେଖିଦେଲେ କନ୍‌ଷ୍ଟ୍ରକ୍‌ସନର ଚିଫ୍ ଇଂଜିନିୟର୍‌ଙ୍କ କଥାରେ ତମ ଠିକାଦାର

ଆସୋସିଏସନ୍ ସେମିତି ବିଲ୍‌ରୁ ଦଶମାଂଶ ଦେବାକୁ କଥା କରି ନଥିଲ । ତୁ ତ ସେତେବେଳେ ସଭାପତି ଥିଲୁ ।

ସେ ଟିକିଏ ରହିଗଲେ ତା'ପରେ କହିଲେ ଶ୍ରୀମୟୀକୁ କିଏ ମନ୍ତ୍ର ବଳରେ ହରଣ କରି ନେଇ ନାହିଁ ତ ?

ଉପରଘରୁ ଶଂଖ, ଘଣ୍ଟା, ଖୋଳ, କରତାଳ ଏକାଥରେ ବାଜିଉଠିଲା । ଶେଷ ସଂଧ୍ୟାର ଅବସନ୍ନ ସମୟଟି ଆସ୍ତେ ଆସ୍ତେ ଗୁମୁରି ଉଠୁଥିଲା ।

ସୁବ୍ରତବାବୁ ସେ ଦିନ ରାତିରେ ମୋଟେ ଶୋଇପାରିଲେନି । ସେ ଭାବିପାରୁ ନଥିଲେ ଉତୀର୍ଣ୍ଣ ବୟସର ଜଣେ ନାରୀକୁ ଭୁଲେଇ ଭଣ୍ଡେଇ ଜଣେ ସାଧୁ ନେବା ମୂଳରେ କି ଉଦ୍ଦେଶ୍ୟ ଥାଇପାରେ ? ହେଲା ଅବା ଶ୍ରୀମୟୀ ଜଣେ ସୁନ୍ଦରୀ ତଥା ସୁଗଠିତ ସାସ୍ଥ୍ୟବତୀ ନାରୀ । ସେ ଅତ୍ୟନ୍ତ ଚତୁରୀ ତଥା ବିଦୂଷୀ । ହେଇପାରେ ତାଙ୍କୁ ଦେଖିଲେ କେବେ ବି ଜାଣିହେବ ନାହିଁ ଯେ ଯୌବନ ଆଗରେ ତାଙ୍କ ବୟସ ଅନେକ ପଛରେ ପଡ଼ିଯାଇଚି । ତାଙ୍କର ଟଣାଟଣା ଆଖି । ଲୋଭନୀୟ ଈଷତ୍ ମୋଟା ତଥା ଲାଲ୍ ଓଠ । ବେଶ ସୁନ୍ଦର ନାସା ଏବଂ ସର୍ବୋପରି ତାଙ୍କର ଉନ୍ନତ ବକ୍ଷୋଜର ଅନେକ ତଳେ ଲୁଚି ରହିଥିବା କଟିଦେଶ ତାଙ୍କୁ କୁଆଡ଼େ ଏତେ ଆକର୍ଷଣୀୟ କରିଥାଏ ଯେ, ଯେକୌଣସି ଋଷିର କ୍ଷଣକରେ ସପ୍ନଭଂଗ ହେଇ ଯାଉଥିବ । ତଥାପି ସୁବ୍ରତ ବୁଝି ପାରୁ ନଥିଲେ, ଘନର କହିବା ଅନୁସାରେ ବାବାଙ୍କର ବୟସ ଯଦି ଶହେ ପହଞ୍ଚ ଯାଇଥାଏ ତେବେ ଏ ପଚଶ ଛୁଇଁଥିବା ନାରୀଟିକୁ ନେଇ ସେ କୋଉ ଅନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରିପାରିବେ ? ଏ ପ୍ରକାର ଏକ ଅଯୌକ୍ତିକ ଅପବାଦ ମନକୁ ମୋଟେ ଛୁଉଁ ନାହିଁ । ତା'ଛଡ଼ା ଭକ୍ତି ଭାବରେ ସମ୍ପୂର୍ଣ୍ଣ ସମର୍ପିତ ଉତୀର୍ଣ୍ଣ ଆତ୍ମାଟି ପାଖରେ ନିରାସକ୍ତା ନାରୀର ପ୍ରେମ ବା ଯାହାକୁ ଦୈହିକ ସଂପର୍କ କୁହାଯାଏ, ତାର ପ୍ରଶ୍ନ ମଧ ଉଠୁ ନାହିଁ । ତେଣୁ ବାବାଙ୍କର ଅମହତ ଉଦ୍ଦେଶ୍ୟ ଯୋଗୁଁ ପ୍ରଦୀପଙ୍କ ସାମାଜିକ ସ୍ଥିତି ଦୋହଲିଯାଉଚି ବୋଲି ଯାହା କୁହାଯାଉଚି ତାହା କେବେ ବି ଗ୍ରହଣୀୟ ନୁହେଁ । ବାବାଙ୍କୁ ଏ ଅପବାଦର କାଳିମା କେବେ ବି ସ୍ପର୍ଶ କରିବ ନାହିଁ । ତା'ଛଡ଼ା ତାଙ୍କ ଆଶ୍ରମରେ କଅଣ ଆଉ ସୁନ୍ଦରୀ ନାରୀ ନାହାନ୍ତି ?

ଅନ୍ୟ କାରଣଟି ହେଲା ଅର୍ଥର ମୋହ । ସୁବ୍ରତବାବୁ ଏ କଥାଟି ଉପରେ ମଧ ଚିନ୍ତା କଲେ । ଯଦି ଆଶ୍ରମର ଭୋପାଳ ଠାରେ ଦୁଇଟା ଉଡ଼ାଜାହାଜ ଅଛି, ଆମେରିକାରେ ତାଙ୍କର ଦୁଇ ହଜାର ଏକର ଜମିରେ ନିଜସ ଏରୋଡ୍ରମ୍ ଓ ଆଉ ତିନିଟା ଉଡ଼ାଜାହାଜ ଅଛି ଏବଂ ସେଗୁଡ଼ିକ ପୃଥିବୀର ୧୪୦ଟି ଦେଶରେ ଥିବା ଆଶ୍ରମକୁ ନିୟମିତ ଯିବା ଆସିବା କରୁଛନ୍ତି । ସେଥିରେ

ସାମାନ୍ୟ ଶହେ ଭରି ସୁନା ଗହଣା ଓ ମାତ୍ର ପାଞ୍ଚ ଲକ୍ଷ ଟଙ୍କାର ଲୋଭର ବଶବର୍ତ୍ତୀ ହେଇ ସେ କଅଣ ଗୋଟାଏ ପରିବାରକୁ ଧ୍ୱଂସ କରି ଦେବେ ?

ସାଧୁ ସନ୍ୟାସୀମାନେ ଯେଉଁମାନେ ଦେବ ଅଂଶ ବୋଲି ନିଜକୁ କହି ବୁଲୁ ଥାଆନ୍ତି ସେମାନେ କଅଣ ସତରେ ଯେକୌଣସି ନାରୀକୁ ବଶକରିପାରିବାର କ୍ଷମତାର ଅଧିକାରୀ ? କିନ୍ତୁ ଏସବୁ ଅଲୌକିକ କ୍ଷମତା ସେମାନେ ଯୋଗ ଓ ମନ୍ତ୍ର ବଳରେ ପାଇଥାଆନ୍ତି ବୋଲି ଆମ ଶାସ୍ତ୍ର ପୁରାଣ ମଧ କହୁଚି । ଏହା ଯଦି ସତ୍ୟ ହେଇଥାଏ ତେବେ ଆମ ସମାଜର କୌଣସି ନାରୀ ସୁରକ୍ଷିତ ନୁହେଁ।

ଏଇ ମୁହୂର୍ତ୍ତରେ ତାଙ୍କର ତନୁଜା କଥା ମନେପଡ଼ିଲା । ଯୋଉ ତନୁଜାକୁ ସେ ଧର୍ମଦ୍ରୋହୀ ତଥା ନୀତିନିୟମ ପାଳନର ବିରୋଧୀ ବୋଲି କହି ମନେମନେ ବଡ଼ ଅନୁତାପ କରୁଥିଲେ ଏବଂ ଏସବୁ ଗୃହସ୍ଥ୍ୟ ଧର୍ମର ବିରୋଧ କରେ ବୋଲି ତାଙ୍କୁ କେତେବାର ଭର୍ତ୍ସନା ମଧ କରିବାକୁ ଛାଡ଼ି ନାହାନ୍ତି ସେଇ ତନୁଜା ପ୍ରତି ତାଙ୍କର ବେଦନାସିକ୍ତ ହୃଦୟ ଆପେ ଆପେ ନରମି ଆସିଲା । କାହିଁକି ଓ କେମିତି କେଜାଣି ତନୁଜାଙ୍କର ସାଧୁ ସନ୍ନ୍ୟାସୀଙ୍କ ପ୍ରତି ଭକ୍ତି ମମତା ମୋଟେ ନାହିଁ । ବାବାମାନଙ୍କ ନାଁ ଶୁଣିଲେ ସେ ଚିହିଁକି ଉଠନ୍ତି । କୌଣସି ସାଧୁଙ୍କ ଫଟୋ ଘରେ ରଖିବା ଦୂରର କଥା ସେପରି ଗୋଟେ କେଲେଣ୍ଡର ମଧ ସେ ଘରକୁ ଆଣନ୍ତି ନାହିଁ । କେହି ଉପହାର ଦେଲେ ସେ ସଙ୍ଗେସଙ୍ଗେ ଆଉ ଜଣକୁ ଦାନ କରି ଦିଅନ୍ତି । ଏ ବିଷୟରେ ଥରେ ସେ କହୁଥିଲେ । ତୁମେ ସେ ବାବାମାନଙ୍କ କଥା ମୋତେ କୁହନି । ମୁଁ ସେମାନଙ୍କୁ ହାଡ଼େ ହାଡ଼େ ଚିହ୍ନିଚି । ଶୁଣିବ ଥରେ କଅଣ ହେଲା ?

ଥରେ ଆମ କଟକକୁ ଜଣେ ନାମଜାଦା ବାବା ଆସିଥିଲେ । ସେ କୁଆଡ଼େ ହିମାଳୟରେ ଚଉଦ ବର୍ଷ କାଳ ଅବସ୍ଥାନ କରିଥିଲେ ଏବଂ ସେଥିରୁ ତିନି ବର୍ଷ କାଳ ସେ ସଂପୂର୍ଣ୍ଣ ଉପବାସ କରି ତପସ୍ୟା କରିଥିଲେ । ତାଙ୍କର ସଂପୂର୍ଣ୍ଣ ଉପବାସର ଅର୍ଥ ହେଲା କେବଳ ଦିନକୁ ସାତଟା ତୁଳସୀପତ୍ର ସହିତ ଏକ ଗ୍ଲାସ୍ ଥଣ୍ଡା ପାଣି ସେବନ । ଅବଶ୍ୟ ସ୍ୱାମୀଜୀ ନିଜେ ଏ କଥା କହିନାହାନ୍ତି । କହିଛନ୍ତି ତାଙ୍କ ଭକ୍ତମାନେ, ଯେଉଁମାନେ ସଭାର ଆୟୋଜନ କରିଥିଲେ । ସ୍କୁଲ୍ ପଡ଼ିଆରେ ବିରାଟ ଜନ ସମାବେଶ । ଗୀତା ଓ ଭାଗବତ୍ ଉପରେ ତାଙ୍କର ପ୍ରବଚନ ଶୁଣିବାକୁ ଲୋକେ କୁଆଡ଼େ ମାସକ ଆଗରୁ ଗୋଟିଏ ସିଟ୍‌କୁ ପାଞ୍ଚଶହ ଲେଖାଏଁ ଅଗ୍ରିମ ଦେଇ ରିଜର୍ଭ କରି ଥାଆନ୍ତି । ସ୍ୱାମୀଜୀ ଆସିଲେ ଏବଂ ମହାନଦୀ କୂଳରେ ଥିବା ଗୋଟିଏ ପାଞ୍ଚ ତାରକା ହୋଟେଲ୍‌ରେ ଅବସ୍ଥାନ କଲେ ।

ସେଦିନ ସଂଧ୍ୟାର ଅଧିବେଶନ ଥିଲା 'ସଂଜମ' ଉପରେ ଭାଷଣ । ଦୀର୍ଘ ଦୁଇ ଘଣ୍ଟା କାଳ ବିଭିନ୍ନ ଶାସ୍ତ୍ର ଓ ବେଦ ଉପନିଷଦର ଉଦାହରଣ ଦେଇ ସ୍ୱାମୀଜୀ ଲୋକଙ୍କୁ ବୁଝାଇଲେ ଯେ

ଜଣେ ଯଦି ଜୀବନଯାକ ସଂପୂର୍ଣ୍ଣ ରୂପେ ସଂଯମ ରକ୍ଷା କରିପାରେ ଅର୍ଥାତ୍ ତା'ର ବୀର୍ଯ୍ୟର ସାମାନ୍ୟତମ ଅଂଶ ମଧ ନଷ୍ଟ ହେଇ ନଥାଏ ତେବେ ତା' ଦେହରେ ଦେବାବତରଣ ଅବଶ୍ୟମ୍ଭାବୀ । ଅର୍ଥାତ୍ ତା'ର ମୃତ୍ୟୁ ନାହିଁ, ସେ ଅମର ।

ସଭାସ୍ଥଳ ବିସ୍ମୟାଭିଭୂତ ହେଇ ପଡ଼ିଥିଲେ ଅସୀମ ଆବେଗରେ । କେହି କେହି ହୁଏତ ସେତେବେଳେ ଭାବୁଥିବେ ଆଉ ସ୍ତ୍ରୀ ସହିତ କଥାବାର୍ତ୍ତା ମଧ ବନ୍ଦ କରିବାକୁ ହେବ ।

ବହୁ ସମୟ ଧରି ତାଙ୍କ ଭାଷଣ ଶୁଣୁ ଥିଲେ ଜଣେ ଯୁବକ । ସେ କୌଣସି ସିଟ୍ ରିଜର୍ଭ କରି ପାରି ନଥିଲେ ବୋଲି, ଆର୍ଥିକ କାରଣରୁ ବୋଧେ, ସଭାର ଶେଷ ଭାଗକୁ ଠିଆ ହେଇ ଶୁଣୁଥିଲେ ।

"ମୋର ପଦେ କହିବାର ଅଛି ଯୋଗୀରାଜ ।" ସେ ନିଜର ଡାହାଣ ହାତ ଉପରକୁ ଟେକି ଜଣାଣ କଲେ ।

ସଭାସ୍ଥଳ ସ୍ତମ୍ଭୀଭୂତ । ସଂପୂର୍ଣ୍ଣ ନିରବ ଓ ନିଷ୍ପନ୍ଦ । ସମସ୍ତେ ପଛକୁ ଫେରି ଚାହିଁଲେ । କିଏ ଏହି ଅର୍ବାଚୀନ ଯୁବକ ? ଏତେ ବଡ଼ ସାଧୁଙ୍କୁ ପ୍ରଶ୍ନ କରିବାକୁ ସାହସ କଲା କେମିତି ? କିଛି ମନ୍ଦ ଉଦ୍ଦେଶ୍ୟ ନାହିଁ ତ ?

ସଭାର ଆୟୋଜକମାନଙ୍କ ଭିତରୁ କେତେ ଜଣ ତାଙ୍କ ପାଖକୁ ଝପଟି ଆସିଲେ । ଶାନ୍ତିଶୃଙ୍ଖଳା ରକ୍ଷା ଉଦ୍ଦେଶ୍ୟରେ ନିୟୋଜିତ କିଛି ଲାଠିଆଳ ସ୍ୱେଚ୍ଛାସେବୀ ମଧ ତାଙ୍କ ଆଡ଼କୁ ମୁହାଁଇଲେ । ଆଦେଶ ପାଇବା ମାତ୍ରେ ସେମାନେ ତାକୁ ଶୂନ୍ୟରେ ଟେକି ନେଇ ହତା ବାହାରକୁ ଫୋପାଡ଼ି ଦେବେ ।

"କୁହ ଯୁବକ, କୁହ ! ମୁଁ ତୁମରି ପରି ଯୁବକମାନଙ୍କ କଥା ଉପରେ ହିଁ ବେଶୀ ଗୁରୁତ୍ୱ ଦେଇଥାଏ । କୁହ ନିର୍ଭୟରେ କୁହ ।"

ମାଇକ୍‌ରେ ସ୍ୱାମୀଜୀଙ୍କ ବାଣୀ ଉଚ୍ଚରିତ ହେବା ମାତ୍ରେ ଜନତା ଭିତରେ ଥିବା ଚାପା ତଥା ନିଃଶବ୍ଦ ଉତ୍ତେଜନା ହଠାତ ପ୍ରଶମିତ ହେଇଗଲା ।

"ଆପଣଙ୍କ କଥା ଯଦି ଠିକ, ସଂପୂର୍ଣ୍ଣ ବୀର୍ଯ୍ୟ ଧାରଣରେ ଯଦି ଦେବାବତରଣ ହେଉଥା, ତେବେ ଏ'ଠି ଏ ଯେଉଁ ବଳଦଟି ଶୋଇ ପାକୁଳିକରୁଚି, ତା' ଦେହରେ ଦେବାବତରଣ କେବେ ହେବ ?"

ତେଣୁ କେବଳ ଲକ୍ଷ୍ମୀ ଠାକୁରାଣୀ ଛଡ଼ା ତନୁଜଙ୍କ ଗାଲେରିରେ ସେ ଆଉ କାହାକୁ ପୂରାଇ ଦିଅନ୍ତି ନାହିଁ ଏବଂ ତାଙ୍କ ଠାରେ ଗୋଟିକର ଦୁଇଟା ଫୁଲ ମଧ୍ୟ ଲଗାନ୍ତି ନାହିଁ । ମୋଟ ପୂଜାର ସମୟ ତାଙ୍କର ଦେଢ଼ରୁ ଦୁଇ ମିନିଟ୍ ଯାହା ତାଙ୍କ ଝିଅମାନେ ମଧ୍ୟ ନାପସନ୍ଦ କରନ୍ତି । ସେମାନେ କହନ୍ତି ଘରର ବୋହୂ ବା ପରିବାରର ସ୍ତ୍ରୀ ପାଖରେ ସମସ୍ତ ପରିବାରର ମଙ୍ଗଳ ନିର୍ଭର କରେ । ବେଶୀ ସମୟ ବସି ପୂଜା କଲେ ମନରେ ଯୋଉ ଶାନ୍ତି ଆସେ ତାହା ଆଉ କୋଉଠି ମିଳେ ନାହିଁ । ଦିନେ ସପ୍ନା କହୁଥିବାର ସେ ଶୁଣିଛନ୍ତି । ବୋଉ ତୁ ଯାହା କହ, ମୁଁ କିନ୍ତୁ ଜାହାଜରେ ଗଲା ବେଳେ ମଧ୍ୟ ମୋର ଠାକୁରମାନଙ୍କୁ ଗୋଟାଏ ଛୋଟ ପେଡ଼ିରେ ସାଥିରେ ନେଇଯାଏ। ଯଦି କିହାତି ଅସୁବିଧା ଯୋଗୁଁ ମୁଁ ପେଡ଼ି ଖୋଲି ନପାରେ ଫ୍ରିଜ୍‌ର ଆଇସ୍ ଚେମ୍ବରରେ ଥିବା ଫୁଲ ନେଇ ପେଡ଼ି ଉପରେ ଚଢ଼େଇ ଦିଏଁ ।

କାହିଁକି ଜାହାଜରେ କଅଣ ଫୁଲଗଛ ନଥାଏ ? ବୋଉ ପଚାରେ । ଥାଏ । କିନ୍ତୁ ତାକୁ ଛିଣ୍ଡେଇବ କିଏ ? ତେବେ ମୁଁ ବେଳେ ବେଳେ ଗୋଟାଏ ପିତଳ ଗାମଲାରେ ଛୋଟ ତୁଳସୀଚଉରାଟିଏ ମଧ୍ୟ ନେଇ ଥାଏ। ଫୁଲ ଯଦି ନ ମିଳେ ?

ସୁବ୍ରତ ମନେ ମନେ ଭାବନ୍ତି । ସପ୍ନା ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଫିଜିକ୍ସରେ M.Sc ପାଶ କରିଛି । ଆଉ ତା' ମାଆ ଗାଁ ମାଇନର ସ୍କୁଲରୁ କେବଳ ପାସ୍ କରିଚି । କିନ୍ତୁ ଦୁଇ ଜଣଙ୍କ ଭିତରେ କି ଅଦ୍‌ଭୁତ ପାର୍ଥକ୍ୟ। କାହିଁକି ଏ ବୀତସ୍ପୃହତା ? ସେ ଦେବତାଙ୍କୁ ଅସ୍ୱୀକାର କରନ୍ତି ନାହିଁ ସତ କିନ୍ତୁ ଦେବତାମାନଙ୍କୁ ନିଜ ବୋଲହାକ ଭିତରେ ବାନ୍ଧି ରଖିଚି ବୋଲି ଦାବି କରୁଥିବା ସାଧୁ ସନ୍ନ୍ୟାସୀମାନଙ୍କୁ ମୋଟେ ପାସଙ୍ଗରେ ପକାନ୍ତି ନାହିଁ ।

ସୁବ୍ରତବାବୁ କିନ୍ତୁ ଅଲଗା । ସେ କେବେ ବି ଦିବ୍ୟଭୂମିର ବାବାଙ୍କୁ ସନ୍ଦେହର ଘେର ଭିତରକୁ ଆଣିପାରୁ ନଥିଲେ । ମହାନ ତପସ୍ୱୀମାନଙ୍କ ବିରୋଧରେ କିଛି କହି ଦେବାଟା ହୁଏତ ସହଜ ହେଇପାରେ । କିନ୍ତୁ ଅନେକ ସମୟରେ ପ୍ରକୃତ କଥା ନଜାଣି କିଛି କହିବା ମୋଟେ ଠିକ୍ ନୁହେଁ । କେହି କେହି ସାଧୁ ସନ୍ନ୍ୟାସୀ ଯେ ବେଳେ ବେଳେ କିଛି ଅପକର୍ମ କରି ନଥିବେ ସେ କଥା ନୁହେଁ । କିନ୍ତୁ ଦିବ୍ୟଭୂମିର ବାବା ସେ ସବୁର ଉର୍ଦ୍ଧ୍ୱରେ । ତା ନହେଲେ ତାଙ୍କ ପାଖରେ ଅପୂର୍ବ ସୁନ୍ଦରୀ ଚିତ୍ରତାରକା ଠାରୁ ବହୁ ସୁନ୍ଦରୀ ଝିଅ ସବୁ ସାମାନ୍ୟ ଆଶୀର୍ବାଦ ଟିକିଏ ପାଇବାକୁ ଆସି ପହଞ୍ଚନ୍ତେ ନାହିଁ । ତାଙ୍କ ଠାରେ ମନ୍ତ୍ରୀମାନଙ୍କ ଠାରୁ ଗଭର୍ଣ୍ଣର ଓ ଜଜ୍‌ମାନେ ଆସି ପହଞ୍ଚନ୍ତେ ନାହିଁ ।

ସୁବ୍ରତବାବୁ କଥାଟାକୁ ଆଉ ଭାବିପାରନ୍ତି ନାହିଁ । ତାଙ୍କଠି କିଛି ଗୋଟାଏ କ୍ଷମତା ନଥିଲେ ଏତେ ବଡ଼ ବଡ଼ ଲୋକ କାହିଁକି ଯାଉଛନ୍ତି ? ଏ ସମସ୍ତଙ୍କୁ ବୋକା ବୋଲିତ କହି ହେବ ନାହିଁ ।

ସମସ୍ତେ ମଧ୍ୟ ଠକି ଯାଉଛନ୍ତି ବୋଲି ମଧ୍ୟ କହି ହେବ ନାହିଁ । ତେବେ କଅଣ ସମସ୍ତଙ୍କୁ ଗୋଟାଏ ଅଜ୍ଞାନର ମେଘ ଢାଙ୍କି ରଖିଚି ? ଯାହା ସତ୍ୟ ନୁହେଁ ତାର ପାତଳ ଆସ୍ତରଣ ଘୋଡ଼ାଇ ରଖିଚି ? ଯୁଗ ଯୁଗରୁ କଅଣ ଏଇଆ ହେଇ ଆସୁଚି ?

ନା, ମୋଟେ ନୁହେଁ । ଏହା କଦାପି ଠିକ୍ ହେଇପାରେନା ।

(୪)

"ବାଜେ କଥା । ଏକଦମ୍ ବାଜେ କଥା । ଦିବ୍ୟଭୂମିର ସ୍ୱାମୀ ସ୍ୱରୂପାନନ୍ଦ କେବେ ସେପରି ହେଇ ନ ପାରନ୍ତି । ତାଙ୍କ ବିରୋଧରେ ଏପରି କଥା ମନକୁ ଆଣିବା ଏକ ଭୟଙ୍କର ପାପ । ତୁମେ ଜାଣ ଏବେ ଆମେରିକାରେ ବହୁ ଅଧ୍ୟାପକ, ବୈଜ୍ଞାନିକ ଏବଂ ରାଜନେତା ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରି ନଥିଲେ ମଧ୍ୟ ତାଙ୍କ ଭାଷଣ ଶୁଣିବାକୁ ବ୍ୟଗ୍ର ହେଇ ଉଠିଛନ୍ତି । ତୁମେ ସ୍ୱାମୀ ବିବେକାନନ୍ଦ କଥା ଜାଣ । ସେ ଯେତେବେଳେ ଆମେରିକାରେ ସଭା କରିବାକୁ ଯାଆନ୍ତି ସେତେବେଳେ କେମିତି ହଲ୍ ଟିକଟଟିଏ ପାଇବାକୁ ଲୋକେ ଧାଡ଼ି ବାନ୍ଧି ଠିଆ ହୁଅନ୍ତି ।" ଆମେରିକାରେ ସମସ୍ତେ କହୁଛନ୍ତି ଇଏ ଦ୍ୱିତୀୟ ବିବେକାନନ୍ଦ ।

ସମୁଦି ଯେତେବେଳେ କଥା ହୁଅନ୍ତି ସେତେବେଳେ ଘନ ଏକାନ୍ତ ବଶମ୍ବଦ ହେଇ ତାଙ୍କ କଥା ଶୁଣନ୍ତି । ମୋଟେ ପାଟି ଫିଟାନ୍ତି ନାହିଁ ।

ସେଦିନ ସମୁଦି ଚକ୍ରଧର ସାମନ୍ତରାୟ ଯେତେବେଳେ ଟେଲିଫୋନରେ ତାଙ୍କୁ ଏ କଥା କହିଲେ ସେତେବେଳେ ଘନ ଆହୁରି ଉତ୍ସାହିତ ହେଇ ଉଠିଲେ । ସେ ତ ତାଙ୍କରି ଠାରୁ ଏ ଦୀକ୍ଷା ନେଇଛନ୍ତି । ଅବିଶ୍ୱାସର ପ୍ରଶ୍ନ କୋଉଠି ଉଠୁଚି ।

ସମୁଦି ଆଶ୍ୱାସନା ଦେଲେ । କହିଲେ ତୁମେ ବ୍ୟସ୍ତ ହୁଅନା । ମୁଁ ଏବେ ତାଙ୍କ ଚିଫ୍ ଆଡ୍‌ମିନିଷ୍ଟ୍ରେଟର୍‌ଙ୍କୁ ପଚାରୁଛି । ସେ ମୋ ବେଚ୍ ମେଟ୍ । ପ୍ରକୃତ କଥା ଜାଣିବାକୁ ମୋଟେ ଅସୁବିଧା ହେବ ନାହିଁ ।

ମୁଁ ତାଙ୍କୁ ମୋଟେ ଫୋନ୍‌ରେ ପାଉ ନାହିଁ । କହିଲା ଘନ ।

ତୁମେ ତାଙ୍କୁ ପାଇବ ନାହିଁ । ମୁଁ ତାଙ୍କର ଭିନ୍ନ ନମ୍ବର ଜାଣେ।

ମୋତେ ଆଜି କହିବେ ? ପ୍ରଦୀପବାବୁ ଖୁବ୍ ବ୍ୟସ୍ତ ହେଉଛନ୍ତି । ଅତତଃ ତାଙ୍କର ମାନସିକ ଶାନ୍ତି ପାଇଁ ଆମର କିଛି କରିବା ଦରକାର ।

ଆଃ ତୁମେ ନିଶ୍ଚିନ୍ତ ରୁହ ସମୃଦ୍ଧି । ମୁଁ ତା'ର ବ୍ୟବସ୍ଥା କରୁଚି ।

ଘନ ସମୃଦ୍ଧି ସହିତ ଫୋନରେ କଥା ହେଉଥିବା ବେଳେ ବୋହୂ ଜୟଶ୍ରୀ ତିନିଥର ଆସି ସେଠୁ ଫେରି ଗଲାଣି । ସେ ଖୁବ ବ୍ୟସ୍ତ ଥିବା ଜଣା ପଡୁଥିଲା । ସେ ଯେମିତି କିଛି ଜରୁରୀ କଥା ଘନକୁ କହିବାକୁ ଚାହୁଁଥିଲା । ଅଥଚ ଶ୍ୱଶୁରଙ୍କ କଥାରେ ବାଧା ଦେଇପାରୁ ନଥିଲା । ଶ୍ୱଶୁର ଓ ବାପାଙ୍କ ମଝିରେ ସେ ବା କେମିତି ପଶି ଯାଇ ପାରନ୍ତା । ଘରର ବୋହୂଟିଏ ଯେତେ ପୁରୁଣା ହୁଏ ସେତେ ତା'ର ସାମ୍ରାଜ୍ୟ ସେ ଅଧିକାର କରି ନେଇଯାଏ । ଦକ୍ଷ ବୋହୂଟି ଆସ୍ତେ ଆସ୍ତେ ସମସ୍ତଙ୍କୁ ତାର କରଦ ରାଜ୍ୟର ରାଜା ବୋଲି ମନେ କରିଥାଏ । ଏବଂ ତା'ପରେ ତା'ର ଶାସନ କାମ ଆରମ୍ଭ କରିଦିଏ । କିନ୍ତୁ ଜୟଶ୍ରୀ ଆସ୍ତେ ଆସ୍ତେ ଘନଠୁ ଶାସନ ଦାୟିତ୍ୱ ନେବ ବୋଲି ପ୍ରତିଶ୍ରୁତି ପାଇଥିଲେ ମଧ ସେ ନିଜେ ନିଜକୁ ଏ ଯାଏଁ ଉପଯୁକ୍ତ ବୋଲି ଭାବି ପାରି ନାହିଁ । କିନ୍ତୁ ନିଜକୁ ଜାହିର କରିବାର ଚେଷ୍ଟା ତା'ର ଅବ୍ୟାହତ ରହିଛି ।

ଟେଲିଫୋନ୍ ଛାଡ଼ିଲା ମାତ୍ରେ ଜୟଶ୍ରୀ ପୁଣିଥରେ ଘନ ପାଖକୁ ଆସିଲା ଏବଂ କହିଲା · ଅନେକ ଜରୁରୀ କାମ ତେଣେ ବାକି ପଡ଼ିଛି । ଆପଣ ଟିକେ ...

ଚମକି ପଡ଼ିଲେ ଘନ । କଅଣ କହୁଚି ଜୟଶ୍ରୀ ? ସେ କଅଣ ଘଟଣା ବିଷୟ ଜାଣି ନାହିଁ ନା ତା'ର ଶୀଘ୍ର ସମାଧାନ ପାଇଁ ଚିନ୍ତା କରୁନାହିଁ, ତାହା ଏକ ଅନାବଶ୍ୟକ ତଥା ଅଦରକାରୀ ଓ ମୁଁ ସେଥିରେ ସମୟ ନଷ୍ଟ କରୁଚି ବୋଲି ଭାବୁଚି କି ?

କଅଣ ହେଲା ମାଆ ? ମୁଁ ଗୋଟାଏ ଜରୁରୀ କଥା ମାନେ ଏଇ ପ୍ରଦୀପବାବୁଙ୍କ ସ୍ତ୍ରୀଙ୍କ କଥା ତୋ ବାପାଙ୍କୁ କହୁଥିଲି । ସେ ତା'ର ଗୋଟାଏ ରାସ୍ତା ଫିଟାଇ ପାରିବେ ।

ମୁଁ ସେ କଥା ଜାଣିଚି ବାପା । କିନ୍ତୁ ଆମର ତେଣେ ଆହୁରି ଅନେକ ଜରୁରୀ କାମ ବାକି ପଡ଼ିଚି । ସିଏ ତେଣେ ଦୁଇଟା ମୋବାଇଲ୍ ଧରି ବସିଛନ୍ତି । ଆପଣଙ୍କୁ ଖୋଜୁଛନ୍ତି । ଜୟଶ୍ରୀ ସେମିତି ଶ୍ୱଶୁରଙ୍କ ପାଖରେ ଠିଆ ହେଇ କହିଲା, ବଣେଇରେ ଆମେ ଯେଉଁ ଜମିଟା ନେଇଚେ ତା'ର ଟର୍ମ ଓ କଣ୍ଡିସନ୍ କୋଉ ଫାଇଲ୍‌ରେ ଅଛି ?

ଘନ ଆଶ୍ଚର୍ଯ୍ୟ ହେଲା । ଏଇଟା ତ ସେମିତି କିଛି ଜରୁରୀ ନୁହେଁ । ସେଇ କଥାଟା ଉପରେ ଏତେ ଗୁରୁତ୍ୱ କାହିଁକି ?

ଘନର ମନେହେଲା ଜୟଶ୍ରୀ ଯେମିତି ଏଇ ସାମାଜୀଙ୍କ ବିଷୟରେ କଥାବାର୍ତ୍ତା ପସନ୍ଦ କରୁ ନାହିଁ । ସେ ଜୟଶ୍ରୀ କଥାର ଉତ୍ତର ନ ଦେଇ ଉଠିଗଲା । ପଛେ ପଛେ ଜୟଶ୍ରୀ । ପଛରେ ଚାଲୁ ଚାଲୁ ସେ କହିଲା ଜମିର ଟର୍ମ ଓ କଣ୍ଡିସନ ବିଷୟରେ ଆଜି ଆମର ଓକିଲ ସହିତ ପରାମର୍ଶ କରିବାର ଅଛି । ଫରେଷ୍ଟ ଲେଣ୍ଡ ପାଇଁ ଆମକୁ କେନ୍ଦ୍ର ସରକାରଙ୍କୁ ଦରଖାସ୍ତ ଦେବାକୁ ହେବ ।

ଆଉଥରେ ମୋବାଇଲ୍ ବାଜି ଉଠିଲା । ଘନବାବୁ କାନରେ ଦେଲେ ।

ସମ୍ପୁଦି କୁହନ୍ତୁ ।

"ସେ ସେଠାରେ ପହଞ୍ଚି ଯାଇଛନ୍ତି । ବେଶ୍ ଆରାମରେ ଅଛନ୍ତି । ତାଙ୍କୁ ଲେଡ଼ିଜ୍ ହଷ୍ଟେଲ୍‌ରେ ଗୋଟିଏ ସତନ୍ତ୍ର ରୁମ୍ ଦିଆଯାଇଛି । ଜଣେ ଆଟେଣ୍ଡାଣ୍ଟ୍ ମଧ ଦିଆଯାଇଛି । ସେ ପଟୁ ଘନର ସମ୍ପୁଦି କହିଲେ ।

ଅଟେଣ୍ଡାଣ୍ଟ୍ ଦିଆଯାଇଚି ? ପଚାରିଲେ ଘନ ।

ହବନି ? ଆଶ୍ରମର ନିୟମ ଅନୁସାରେ ବିଶିଷ୍ଟ ଅତିଥି ପୁଣି ଏକୁଟିଆ ମହିଳା ହେଇଥିଲେ ତାଙ୍କର ସତନ୍ତ୍ର ଯତ୍ନ ନିଆଯାଏ । ତେଣୁ ଚିନ୍ତା କରିବାର କିଛି ନାହିଁ ।

ଓହୋ, ଆପଣ ମୋତେ ଏବେ ଚିନ୍ତା ମୁକ୍ତ କଲେ । ବହୁତ ଧନ୍ୟବାଦ । ତା'ପରେ ସେ ଜୟଶ୍ରୀ ଆଡ଼କୁ ଅନେଇଲେ ଏବଂ କହିଲେ ଦେଖିଲୁ କେତେ ଚମତ୍କାର ବ୍ୟବସ୍ଥା ସେଠି ? ଯା ହେଉ ମଣିଷର ଚିନ୍ତାଗଲା ।

ଜୟଶ୍ରୀ ଚଞ୍ଚଳ ପଦକ୍ଷେପରେ ଗୋଟିକ ପରେ ଗୋଟିଏ ପାହାଚ ଉପରକୁ ଉଠୁଥିଲା ବେଳେ ସେ କଥାର କିଛି ଉତ୍ତର ନଦେଇ କହିଲା, "ଏଇ ଘରକୁ ଆସନ୍ତୁ । ସେ ଏଇ ଘରେ ଅଛନ୍ତି ।"

( ୪ )

ରାଉରକେଲାରେ କେଇଟା ଦିନର ରହଣି ଭିତରେ ସୁବ୍ରତବାବୁ ନିଜକୁ ଠିକ୍ କେମିତି ଭାବରେ ଚଳିବେ ସେ କଥା ବୁଝିପାରୁ ନଥିଲେ । ସେ ଭାବୁଥିଲେ ଷାଠିଏ ସତୁରୀଦଶକରେ ସେ ଯୋଉ ରାଉରକେଲା ଦେଖିଥିଲେ ତାହା ଏବେ ସଂପୂର୍ଣ୍ଣ ବଦଳିଯାଇଚି । ହବା କଥା । ଷ୍ଟିଲ ପ୍ଲାଣ୍ଟ ତିଆରି ହେବାର ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଯା'ଭିତରେ ଗଡ଼ିଗଲାଣି । ସେତେବେଳେ ଯୋଉ ଯୁବକମାନେ ଆସିଥିଲେ ରାଉରକେଲାକୁ ସେମାନଙ୍କ ଦେହରେ ଏବେ ଜରା ଦୋଳି ଖେଳୁଚି ।

ଯୋଉ ଯୁବତୀମାନେ ଛନ୍‌ଛନ୍ ବୟସରେ ଆସି ନୂଆ ଶିଳ୍ପ ସହରରେ ପାଦ ଥାପି ଥିଲେ ସେମାନଙ୍କ ମୁହଁକୁ ଏବେ ଅନେଇ ହେଉନି । କେତେ ବିଶ୍ରୀ ଦେଖାଯାଉଛି । ମୁହଁର ଚମ ଓହଳିଚି । ଆଖିରୁ ଦୃଷ୍ଟି ଶକ୍ତି କମିଚି । କାନ କଥା ମାନୁନି । ଦାନ୍ତ ଉଭାନ ହେଇଯାଇଚି ଏବଂ ଆଉ କେହି କେହି ଆଣ୍ଠୁ ଗଣ୍ଠିର ଦରଜ ଯୋଗୁଁ ପାଦେ ବି ଆଗେଇ ପାରୁ ନାହାନ୍ତି ନଚେତ ବାଡ଼ିଟିଏ ଧରି ଖୁବ୍ ବେଶିରେ ଗେଟ୍ ଯାଏଁ ଯାଉଛନ୍ତି କେବଳ ତୁଳସୀ ମୂଳରେ ଢାଳେ ପାଣି ଢାଳିବା ପାଇଁ ।

ବାର୍ଦ୍ଧକ୍ୟ କେତେ ବଳବାନ୍ ସତେ ? ଯିଏ ଯେତେ ଚେଷ୍ଟା କଲେ ମଧ ତା'ର ଗତିକୁ କେବେ ରୋଧ କରିପାରି ନାହିଁ । ଯୌବନର ଏକମାତ୍ର ଶତ୍ରୁ ବାର୍ଦ୍ଧକ୍ୟ ଯୁଦ୍ଧରେ କେବେବି ହାରେ ନାହିଁ । ତା'ର ଜୟ ଯେମିତି ଅନିବାର୍ଯ୍ୟ ଯୌବନର ପରାଜୟ ସେମିତି ଅବଧାରିତ । ତେଣୁ କ୍ଷଣକ ପାଇଁ ନିଜ ଗର୍ବ ଓ ଗୌରବରେ ଫାଟି ପଡୁଥିବା ମଣିଷର ଯୌବନ ଏତେ ବେଶୀ ରଣ ହୁଂକାର ଦିଏ ଯେ ତାହା କଳନା କରି ହୁଏ ନାହିଁ । ଅନ୍ଧ ଅହମିକାର ଦୌଡ଼ରେ ଦୌଡୁଥାଏ ତା' ପାଖେ ପାଖେ ତା'ର ଏକମାତ୍ର ପ୍ରତିଦ୍ୱନ୍ଦ୍ୱୀ ମଧ ଆଉ ଗୋଟାଏ ସମାନ୍ତରାଳ ରାସ୍ତାରେ ସେମିତି ଦୌଡୁଥାଏ । ସମୟ ଆସିଲା ମାତ୍ରେ ବାର୍ଦ୍ଧକ୍ୟ ଯୌବନକୁ ଏମିତି ଧରି ପକାଏ ଯେ ସେତେବେଳେ ସେ ମୋଟେ ବୁଝିପାରେ ନାହିଁ, ସେ ଅନ୍ୟ ଗୋଟିଏ ପରାକ୍ରମୀ ଶତ୍ରୁ ଦ୍ୱାରା କବଳିତ ହେଇ ସାରିଚି ।

ମଣିଷ ଜୀବନର ଦୁଇଟି ପ୍ରଧାନ ଅବସ୍ଥା ସମୟ ସୁଅରେ ପଡ଼ି ଏମିତି କେତେବେଳେ ଯେ ଗୋଟିଏ ବିନ୍ଦୁରେ ଆସି ପହଞ୍ଚିଯାଏ ସେ କଥା ସେ ନିଜେ ମଧ ଜାଣିପାରେ ନାହିଁ । ସେଇ ବିନ୍ଦୁ ହିଁ ଶେଷରେ ସମୟ ଭିତରେ ଲୀନ ହେଇଯାଏ। ମଣିଷ ଜୀବନକୁ ଗୋଟାଏ ବିନ୍ଦୁ ଓ ବୃତ୍ତ ସହିତ ତୁଳନା କରି ହେବ । ବିନ୍ଦୁରୁ ଜନ୍ମ ହେଲା ପରେ ତାହା ବୃତ୍ତାକାରରେ ବଢ଼ି ବଢ଼ି ଯାଏ ଏବଂ ପୁଣି ଶେଷରେ ବିନ୍ଦୁକୁ ଫେରିଆସେ । ଶେଷରେ ବିନ୍ଦୁ ବି ନିଶ୍ଚିହ୍ନ ହେଇଯାଏ । ଲୁଚି ଯାଏ ମହାସମୁଦ୍ର ଭିତରେ ।

ମିସେସ୍ ଅରୁଣା ରାୟଙ୍କ ଘରେ ପହଞ୍ଚି ସୁବ୍ରତବାବୁ ଏଇ ସତ୍ୟଟିକୁ ଅତି ସ୍ୱଷ୍ଟ ଭାବେ ଉପଲବ୍ଧ କରିପାରିଲେ ।

ଯୋଉ ଅସ୍ଥି ଚର୍ମସାର ଅରୁଣା ରାୟଙ୍କୁ ସେ ଆଜି ଦେଖୁଛନ୍ତି ଏକଦା ସେ ଥିଲେ ଷ୍ଟିଲ ଟାଉନ ସିପ୍‌ର ଅପୂର୍ବ ସୁନ୍ଦରୀ । ଅରୁଣା ଥିଲେ ଗୋଟିଏ ହାଇସ୍କୁଲର ଶିକ୍ଷୟିତ୍ରୀ ଏବଂ ତାଙ୍କ ସ୍ୱାମୀ ଥିଲେ କାରଖାନାର ପ୍ରଶାସନିକ ବିଭାଗର ଜଣେ ଜୁନିଅର ଅଫିସର । ଅରୁଣା ଜଣେ ସାଧାରଣ ମହିଳା ନ ଥିଲେ । ସଂଗୀତ, ନୃତ୍ୟ, କ୍ରୀଡ଼ା ଠାରୁ ଆରମ୍ଭ କରି ମଞ୍ଚାଭିନୟ ଓ ସାହିତ୍ୟ କ୍ଷେତ୍ରରେ

ଥିଲା ଅସମ୍ଭବ ପାରଦର୍ଶିତା । ମାତୃଭାଷା ତାଙ୍କର ବଂଗଳା ହେଲେ ମଧ୍ୟ ଓଡ଼ିଆ ଭାଷାକୁ ସେ ନିଜର କରି ନେଇଥିଲେ । ତେଣୁ ସେ ଓଡ଼ିଆଙ୍କର ବେଶ ପ୍ରିୟ ଥିଲେ । ନଜରୁଲ୍ ଓ ରବୀନ୍ଦ୍ରନାଥଙ୍କ ସଙ୍ଗୀତକୁ ସେ ଓଡ଼ିଆରେ ଏତେ ଚମତ୍କାର ଭାବରେ ବୋଲି ପାରୁଥିଲେ ଯେ ଅନ୍ୟମାନେ ବୁଝିପାରୁ ଥିଲେ ସେ ଓଡ଼ିଆ ନା ବଂଗାଳୀ ।

ଆଉ ସେ ସମୟରେ ତାଙ୍କୁ ଯେ ମଞ୍ଚ ଉପରେ ଦେଖୁଚି ସେ ବୁଝିପାରେ ନାହିଁ ସେ ଜୀବନ୍ତ ମୂର୍ତ୍ତି ଦେଖୁଚି ନା କୌଣସି କୁଶଳୀ ଶିଳ୍ପୀର ସଦ୍ୟ ପ୍ରସ୍ତୁତ ଚିତ୍ରପଟଟିଏ ଦେଖୁଚି

ଏଇ ପ୍ରକାର ଜଣେ ମହିୟସୀ ମହିଳାଙ୍କ ସହିତ ସୁବ୍ରତବାବୁଙ୍କର ସଂପର୍କ ଥିଲା ଅତି ନିବିଡ଼ । ସଂପର୍କଟି ଗଢ଼ି ଉଠିଥିଲା ତାଙ୍କ ସାନଝିଅ ସପ୍ନାକୁ କେନ୍ଦ୍ର କରି । ଡାକି କହିଥିଲେ ତାଙ୍କୁ, ଆପଣଙ୍କ ଝିଅ ସପ୍ନା ଜୁଏଲ୍‌ଟିଏ । ତା'ର ଆଉ ଟିକିଏ ଯତ୍ନ ନେଲେ ସେ ସାରା ରାଜ୍ୟର ନାଁ ରଖିବ ।

ବିମୋହିତ ହେଇ ପଡ଼ିଥିଲେ ସୁବ୍ରତ । ନିଜ ଝିଅର ପ୍ରଶଂସାରେ ନୁହେଁ, ଅରୁଣାଙ୍କ ମାଦକଭରା କଥା ପଦକରେ । ଅରୁଣାଙ୍କ ଭଳି ନାରୀ ଯାହାଙ୍କ ପାଇଁ ଅଫିସର୍ସ କ୍ଲବ କିମ୍ବା ଅନ୍ୟାନ୍ୟ ସାଂସ୍କୃତିକ ଅନୁଷ୍ଠାନରେ ହଜାର ହଜାର ହାତ ଗୋଟାଏ ଆବେଗିକ ଆହ୍ଲାଦରେ ଉପରକୁ ଉଠିଯାଏ କେବଳ ମାତ୍ର ସ୍ପର୍ଶାନୁଭବଟିଏ ପାଇବା ପାଇଁ ଏବଂ ଯାହାଙ୍କ ସହିତ ପଦେ କଥା ହେବା ପାଇଁ ପୁରୁଷୋଚିତ ଆତୁରତା ଅମଡ଼ାମାଡ଼ି ଚାଲିଥାଏ ସେଇ ଅରୁଣା ରାୟ ସେ ଦିନ ଏକାନ୍ତରେ ସ୍କୁଲ ଅଫିସରେ ପାଖକୁ ଲାଗି ବସି ହସି ହସି କଥା ହେଉଛନ୍ତି ସୁବ୍ରତ ବାବୁଙ୍କ ସହିତ ।

ସୁବ୍ରତବାବୁ ସେ ଦିନ ନିଜର ସଂବିତ ହରାଇ ବସିଥିଲେ । ସେ ଖାଲି ତାଙ୍କୁ ଦେଖୁଥିଲେ । ହୁଏତ କିଛି ଶୁଣିପାରୁ ନଥିଲେ । ପରେ ସେ ରାସ୍ତାରେ ଆସୁଆସୁ ଭାବୁ ଥିଲେଲ ମାଡ଼ମ୍ କଅଣ ତାଙ୍କୁ ଡକେଇ ଥିଲେ କେବଳ ତାଙ୍କ ଝିଅ କଥା କହିବା ପାଇଁ ?

ଏଇ ଝିଅର ବାହାନା ନେଇ ସେ କେତେଥର ଅରୁଣାଙ୍କ ଘରକୁ ମଧ୍ୟ ଯାଇଛନ୍ତି । ବେଶ କିଛି ସମୟ ତାଙ୍କ ସୁସଜିତ ତଥା ଆଉ କେହି ସେଠାକୁ ଆସି ଡିଷ୍ଟର୍ବ କରୁ ନଥିବା ଡ୍ରଇଂରୁମ୍‌ରେ ବିତେଇଛନ୍ତି । ସବୁବେଳେ ସେ ଅନୁଭବ କରିଛନ୍ତି ନିଜର ଗୋଟାଏ ସମ୍ମୋହିତ ଅବସ୍ଥା । ଗୋଟାଏ ନାରୀର କି ଅପୂର୍ବ ଆକର୍ଷଣ ଶକ୍ତି ? ଯୋଉଠି ନାରୀର ଏହିପରି ଗୋଟାଏ ଶକ୍ତି ଥାଏ ତାକୁ ମାନବୀ କୁହାଯିବ ନା ଦେବୀ ?

ସେଦିନର କଥା ଏବେ ବି ସୁବ୍ରତଙ୍କର ମନେଅଛି । ବରାବର ମନେରହିବ ମଧ୍ୟ ।

ସୁଖାନୁଭୂତିର ସମୟକୁ ମଣିଷ କେବେବି ଭୁଲିପାରେ ନାହିଁ । ମନ ଭିତରେ ପାଉଁଶ ତଳର ନିଆଁପରି ସେ ସବୁବେଳେ ଲିଭିଲିଭି ଜଳୁଥାଏ ଓ ଜଳୁଜଳୁ ମଧ୍ୟ ଲିଭୁ ଥାଏ । ସେ ନା ହୁତ ହେଇ କେତେବେଳେ ଜଳେ ନା ଧପ୍ କରି କେତେବେଳେ ଲିଭିଯାଏ ।

ସେଦିନ ଅରୁଣା ବାହାରି ଥିଲେ ଗୋଟାଏ କୋଉ ମନ୍ଦିରକୁ ଯିବାକୁ । ହାତରେ କିଛି ଫୁଲ ଥିବା ଗଙ୍ଗୁଡ଼ି ଓ ଧୂପ । ପିନ୍ଧି ଥାଆନ୍ତି ନାଲିଧଡ଼ି ଥିବା ସଫେଦ ଶାଢ଼ି ଓ ତା ସାଙ୍ଗକୁ ନାଲି ବ୍ଲାଉଜ ।

ସୁବ୍ରତବାବୁଙ୍କୁ ଗେଟ୍ ପାଖରେ ଦେଖି ସେ ଅଟକି ଗଲେ । ଆସନ୍ତୁ କୁଆଡ଼େ ଥିଲେ ଏତେ ଦିନ ଯାଏଁ ? ଏ'ଠି ନଥିଲେ ?

ସୁବ୍ରତ ଅରୁଣାଙ୍କୁ ଦେଖି ଏତେ ମୁଗ୍ଧ ହେଇ ଯାଉଥିଲେ ଯେ ଅରୁଣାଙ୍କ କଥା ତାଙ୍କ କାନରେ ବୋଧେ ପଡ଼ିଲାନି ।

ଝିଅ ଫାଷ୍ଟ ହେଉଚି ତ । କହିଲେ ସୁବ୍ରତ ।

ଅରୁଣା ବୁଝିପାରିଲେ । ସେ ସାମାନ୍ୟ ହସି ଦେଲେ ଏବଂ ତାଙ୍କରି ସାମ୍ନାରେ ଛିଡ଼ାହେଇ ନିଜ ଶାଢ଼ିଧଡ଼ିକୁ ନିଜ ଚମ୍ପା ଆଙ୍ଗୁଳିରେ ଛାତି ଉପର ଦେଇ ଆଉଁଶି ନେଉ ନେଉ କହିଲେ ମନ୍ଦିର ପାଇଁ ଏ ଶାଢ଼ି ଠିକ୍ ହେଲା ?

ସୁବ୍ରତ ଭାବିଲେ ଆଉ କୋଉ ଶାଢ଼ି ପିନ୍ଧିଲେ ଅରୁଣା ତା'ଠୁ ଅଧିକ ସୁନ୍ଦର ଦେଖାଯିବେ ? କିନ୍ତୁ ସେ କିଛି କହି ନପାରି ଖାଲି ତାଙ୍କ ଆଖିକୁ ଅନେଇ ରହିଲେ । ଇସ୍ କି ଚମତ୍କାର ଆଖି ଦି'ଟା । ମୋଟେ କିଛି  ନକହି ଅନେକ କଥା କହୁଥିବା ଆଖିକୁ ଦେଖୁ ଦେଖୁ ସେ ମୁଗ୍ଧ ହେଇ ଯାଉଥିଲେ ।

ପିଣ୍ଡାରୁ ଓହ୍ଲେଇଲେ ପ୍ରଥମେ ପଡ଼େ ଚମ୍ପାଗଛ । ଫୁଲ ଭର୍ତ୍ତି । ମହମହ ବାସନାରେ କମ୍ପୁଚି । କାଲିର ପାଖୁଡ଼ା ସବୁ ବିଛି ହେଇ ପଡ଼ିଚି ।

ମୋତେ ଦି'ଟା ଫୁଲ ତୋଳି ଦେବେ ?

ଚମକି ପଡ଼ିଲେ ସୁବ୍ରତ । ଗୋଟାଏ ବିରଳ ଅନୁଭବର ଉଚ୍ଚାରଣ ତାଙ୍କୁ ଆମୋଦିତ କରିଦେଲା । ସେ କଅଣ ଶୁଣୁଛନ୍ତି !

ଅରୁଣା ଗଙ୍ଗୁଡ଼ି ଥୋଇ ଦେଇ କହିଲେ ରହନ୍ତୁ ମୁଁ ଆସୁଚି ।

କିନ୍ତୁ ସେ ଆସିବା ପୂର୍ବରୁ ସୁବ୍ରତ ଆଂଜୁଳାଏ ଚମ୍ପାଫୁଲ ତୋଳି ସାରିଥିଲେ ।

ହେଇ ନିଅନ୍ତୁ । ହାତ ପାତନ୍ତୁ ।

ଗୋଟିଏ ପରମତୃପ୍ତିର ହସ ତାଙ୍କ ଓଠର କୂଳ ଉଛୁଳେଇ ଝରିପଡୁଥିଲା ସେତେବେଳେ ।

ଭୁଲି ହେବ ସେ ମୁହୂର୍ତ୍ତକୁ ? ସେ ସମୟକୁ ? ଚମ୍ପାଫୁଲର ମହମହ ବାସ୍ନା ଏବେବିତ ତାଙ୍କ ଭିତରେ ଜୀବନ୍ତ ରହିଚି ।

ସେଇ ଅରୁଣାକୁ ସେଦିନ ଗୋଟାଏ ଆର୍ମଚେଆରରେ ଅର୍ଦ୍ଧ-ଶାୟିତା ଅବସ୍ଥାରେ ଦେଖି ସୁବ୍ରତ ଥମ ହେଇ ଠିଆ ହେଇଗଲେ । ସେ କଅଣ ଦେଖୁଚନ୍ତି ? ଧ୍ୱଂସ ପ୍ରାୟ କୋଣାର୍କର କଳା ନୈପୁଣ୍ୟ ନା ଏବର ଜବରୋନ୍ମୋଖୀ ବାରବାଟି ଦୁର୍ଗ ? କୋଣାର୍କ ଓ ବାରବାଟି ଏକଦା ଗର୍ବ ଓ ଗୌରବର ଶିଖରରେ ଥିଲା । ଆଉ ଆଜି ? ଅରୁଣା ପ୍ରଥମେ 'ସୁବ୍ରତ' ନାଁଟା ମନେପକେଇପାରି ନଥିଲେ । ଶୁଣି ତ ପାରି ନଥିଲେ ପ୍ରଥମେ । ପରେ ମନେ ପଡ଼ିଲା ନା ଖାଲି ସୌଜନ୍ୟ ଦୃଷ୍ଟିରୁ କହିଲେ ବସନ୍ତୁ - "ବୁଝିପାରିଲେ ନି ସୁବ୍ରତ ।"

କି ସାଂଘାତିକ ପରିବର୍ତ୍ତନ ମଣିଷର ? ଯୋଉ ଅରୁଣାଙ୍କ ସହିତ ଦେଖା କରିବା ପାଇଁ ସୁବ୍ରତଙ୍କୁ ଅନ୍ତତଃ ଅଧଘଣ୍ଟାଏ ଅପେକ୍ଷା କରିବାକୁ ପଡୁଥାଏ, ସେଇ ଅରୁଣା ଆଜି ବାରଣ୍ଡାରେ ଅର୍ଦ୍ଧଶାୟିତା ? ସେ ପ୍ରଥମେ ବୁଝିପାରିଲେ ନି ଇଏ ଅରୁଣା ନା ତାଙ୍କ ଫସିଲ ?

ଅନେକ ଦିନ ପରେ ଆପଣଙ୍କ ସହିତ ଦେଖା ନା ? କହିଲେ ଅରୁଣା ସ୍ମିତ ହସ ଫୁଟାଇ । ଟିକିଏ ରହି ସେ ପୁଣି ପଚାରିଲେ କେବେ ଆପଣ ରିଟାୟାର କଲେ ?

ଚମକି ପଡ଼ିଲେ ସୁବ୍ରତ । ରିଟାୟର୍ଡ଼ ? ହଁ ସେ ବି ତ ରିଟାୟାର କଲେଣି ଅନେକ ଦିନୁ । ତାଙ୍କ ଚେହେରା ମଧ ଅନେକ ବଦଳିଯାଇଛି । କିନ୍ତୁ କାହିଁ ତାଙ୍କର ସେ କଥା ମନେ ନାହିଁ । ସେ କଅଣ ଗୋଟାଏ ରିଟାୟାର୍ଡ଼ ମନ ନେଇ ଅରୁଣାଙ୍କୁ ଭେଟିବାକୁ ଆସିଥିଲେ କି ? ଅନେକ ତେନ୍ତୁଳିଆ ବିଛା ଯେମିତି ତାଙ୍କୁ ଏକାଥରେ କାମୁଡ଼ି ପକାଇଲା ତାଙ୍କ ଦେହର ବିଭିନ୍ନ ଜାଗାରେ । ସେ ଅସହ୍ୟ ଯନ୍ତ୍ରଣାରେ ଚିତ୍କାର କରି ଉଠିଲେ । ଅରୁଣାଙ୍କ ସେଇ ଗୋଟିଏ ପ୍ରଶ୍ନ ସୁବ୍ରତଙ୍କୁ ଜରାଜୀର୍ଣ୍ଣ ଜଉଘର ଭିତରେ ବାନ୍ଧି ପକେଇଲା । ସେ ତା ଭିତରେ ଅଣନିଶ୍ୱାସୀ ହେଇ ଯାଉଥିଲେ । ସେ ସେଥିରୁ ମୁକ୍ତି ପାଇବା ପାଇଁ ପାଟି କଲେ "ଖୋଲ, କବାଟ ଖୋଲ" । କବାଟ ଖୋଲିଲା ନାହିଁ । ସେ କବାଟ ଖୋଲେ ନାହିଁ । ସୁବ୍ରତ ବାବୁଙ୍କ ଆର୍ତ୍ତ ଚିତ୍କାର ତା'ରି ଭିତରେ ପବନରେ ମିଳାଇ ଯାଉଥିଲା ।

ହଠାତ ସୁବ୍ରତବାବୁ ଦେଖିଲେ ସେ ଘର ଭିତରେ ଗୋଟାଏ ମୂଷା । ଗୋଟାଏ ନୁହେଁ ଅନେକ ମୂଷା । ମୂଷାମାନଙ୍କର ଲମ୍ବା ଲମ୍ବା ନିଶ । ଗୋଟାଏ ଗୋଟାଏ ତେରଛା ଖଣ୍ଡା ପରି ନାକ ପାଖରୁ ଲମ୍ବି ଯାଇଚି । ଖଣ୍ଡାର ଧାର ଚିକ୍‌ଚିକ୍ କରୁଚି । ନିଶ ଉପରକୁ ତାର ଆଖି । ଆଖି ସବୁ ଜଳୁଚି ଦାଉଦାଉ ହେଇ । ଅଧରାତିରେ ଘରେ ପଶିଥିବା ଦୁର୍ଦ୍ଧାନ୍ତ ଡକାୟତର ଆଖିପରି । ମୂଷାଟିଏ ତାଙ୍କ ପାଦ ପାଖରେ ଠିଆ ହେଇ ତାଙ୍କୁ ଦେଖୁଚି । ଗୋଟାଏ କଟାକ୍ଷ ଚାହାଁଣି । ସୁବ୍ରତ ସେ ମୂଷାକୁ ଧରିବା ପାଇଁ ହାତ ବଢ଼େଇଲେ । ଆରେ ମୂଷାର କି ସାହସ । ସେତ ସୁବ୍ରତଙ୍କୁ ଡରୁ ନାହିଁ । ସେ ଅନୁଭବ କଲେ ତାଙ୍କ ହାତ ଥରୁଚି । ତେବେ ସେ କଅଣ ନିଜେ ଡରୁଛନ୍ତି ? ସାମାନ୍ୟ ମୂଷାକୁ ? ତାଙ୍କର ଏତେ ଭୟ ? ତାଙ୍କ ଭିତରେ ଭୟର ପାହାଡ଼ଟିଏ ଠିଆ ହେଇଚି ।

ରାସ୍ତାରେ ଫେରୁଥିବା ବେଳେ ସେ ଦେଖିଲେ ସହରଟା ଯାକ ସବୁଠି ଗୋଟାଏ ଗୋଟାଏ ଶ୍ମଶାନ । ସବୁଠି ମଢ଼ ପଡ଼ିଚି । ମଢ଼ ଚାରିପଟେ ବିଲୁଆ ଓ କୁକୁରଙ୍କ ମେଳି । ମହୋତ୍ସବର ଦିନ ଆରମ୍ଭ ହେଇଯାଇଚି । ବିଲୁଆମାନେ ଶବ ଚାରିପଟେ ସଂକୀର୍ତ୍ତନ କରି ବେଢ଼ା ପକାଉଛନ୍ତି । ହଠାତ୍ ସହରଟାରେ ଏତେ ଶ୍ମଶାନ କୋଉଠୁ ଆସିଲା ସେ ବୁଝି ପାରୁ ନଥିଲେ । ସବୁଠି ନିଆଁ ଦିକ୍‌ଦିକ୍ ଜଳୁଚି । ଅଧାପୋଡ଼ାକାଠ ଦୂରକୁ ଦେଖାଯାଉଚି । ଜୁଇରୁ ବାହାରୁଚି ଶେଷ ଧୂଆଁ ମଣିଷ ପୋଡ଼ାର ଗନ୍ଧ । କଞ୍ଚାମାଂସର ପୋଡ଼ା ଗନ୍ଧ ବେଶ୍ ଦୂରକୁ ବାରିହେଇଯାଉଚି । ଠିକ୍ ସେତିକିବେଳେ ଦୂରରୁ ମନ୍ଦିରର ଘଣ୍ଟା ଧ୍ୱନି ମଧ୍ୟ ଶୁଭୁଥିଲା ।

ସୁବ୍ରତବାବୁଙ୍କର ମନେହେଲା ସେ ଯେମିତି ଅନେକ ଦୂରକୁ ଚାଲି ଆସିଲେଣି । ସେ କୋଉ ଜାଗାରେ ଆସି ପହଞ୍ଚିଲେଣି ସେ କଥା ବୁଝିପାରୁନାହାନ୍ତି । ତାଙ୍କ ଘର କୋଉଠି । ଘନର ଘର କୋଉଠି ରହିଲା, ସେ କେମିତି ଏମିତି ଗୋଟାଏ ଅଜଣା ଅଶୁଣା ଜାଗାକୁ ଭୁଲରେ ଆସିଗଲେ । ସେ ଆଉ ଜାଣିଶୁଣି ଆସି ଗଲେ କି ? ସେ ସୁସ୍ଥ ମନରେ ଆସିଚନ୍ତି ? ତା'ପରେ ତାଙ୍କର ମନେହେଲା ଏବେ ରାତି କେତେ ହେଲାଣି ? ରାତିର ଅନ୍ଧକାର ଭିତରେ ସେ ହୁଏତ ବାଟ ଯାଉନାହାନ୍ତି । ସେ ଅନ୍ଧକାର ଭିତରେ ଘନ, ତା'ର ବୋହୂ ଜୟଶ୍ରୀ, ଘନର ସମୁଦି, ପ୍ରଦୀପ ଓ ତା'ର ସ୍ତ୍ରୀ ଶ୍ରୀମୟୀ, ସ୍ୱାମୀ ସ୍ୱରୂପାନନ୍ଦ ମହାରାଜ ଏବଂ ଅରୁଣା ରାୟ ଏ ସମସ୍ତେ ଯେମିତି ଅସ୍ୱାଭାବିକ ଭାବେ ହଜିଯାଉଛନ୍ତି । ହଜିଯାଇ ପୁଣି ଦେଖା ଯାଉଛନ୍ତି । ସୁବ୍ରତବାବୁ ସେମାନଙ୍କୁ ଦେଖିଲାମାତ୍ରେ ଧରିବା ପାଇଁ ହାତ ବଢ଼ାଉଛନ୍ତି । କିନ୍ତୁ କାହିଁ ? ସେମାନଙ୍କୁ ତ ସେ ଆଉ ଦେଖୁ ନାହାନ୍ତି । ତେବେ କୁଆଡ଼େ ଗଲେ ସେମାନେ ?

କିନ୍ତୁ ଅଛନ୍ତି ସମସ୍ତେ । କେହି କୁଆଡ଼େ ଯାଇ ନାହାନ୍ତି । କିଟି କିଟି ଅନ୍ଧକାର ଭିତରେ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିବ ? କେତେ କାଳ ?

ଘନ ସେ ଦିନ ସୁବ୍ରତବାବୁଙ୍କୁ କହିଲା ଆମେ ଦିବ୍ୟଭୂମିକୁ ଯିବାକୁ ଠିକ କରିଛୁ । ମୁଁ ଓ ମୋ ସହିତ ପ୍ରଦୀପବାବୁ ମଧ ଯିବେ । ତୁମେ ଯଦି ଯିବ ଆହୁରି ଭଲ ହେବ । ପ୍ରଦୀପ ବାବୁ ଯେତେବେଳେ ଯାଉଛନ୍ତି ତାଙ୍କୁ ସାଥି ଦେବା ପାଇଁ ତୁମର ସହଯୋଗ ଦରକାର । ତୁମେ ବି ଦେଖି ଆସନ୍ତ ଦିବ୍ୟଭୂମି ଓ ଯଦି ସମ୍ଭବ ହୁଏ ସ୍ୱାମୀ ସ୍ୱରୂପାନନ୍ଦଙ୍କୁ ମଧ ଆମେ ଭେଟିପାରିବା । ଯଦି ଆମ ଭାଗ୍ୟରେ ଥାଏ ।

ଭାଗ୍ୟରେ କାହିଁକି ? ଆମେ ଯେତେବେଳେ ଆଶ୍ରମକୁ ଯାଉଛୁ ସେ'ଠି ତ ନିଶ୍ଚୟ ଦିନେ ଦି'ଦିନ ରହିବା । ତେବେ ଦର୍ଶନ ମିଳିବ ନାହିଁ କାହିଁକି ? ଆମର ଆଉ ଅନ୍ୟ କାମ କଅଣ ? ଶ୍ରୀମୟୀଙ୍କୁ ଫେରେଇ ଆଣିବା ଆମର ପ୍ରଧାନ କାମ ନା ଆଉ କଅଣ ? ସେତକ ତ ଆମେ ନିଶ୍ଚୟ କରିବା । କହିଲେ ସୁବ୍ରତ ।

ହଁ ସେତକ ଆମକୁ ଯେମିତି ହେଲେ କରିବାକୁ ହେବ । ସ୍ୱାମୀଜୀଙ୍କ ସେବା ପାଇଁ ପରିବାରକୁ ଛାଡ଼ିବାର ଆବଶ୍ୟକତା ନାହିଁ । ଦୁଇଟା କାମ ଏକାସାଥିରେ କରି ହେବ । ଅବଶ୍ୟ ଏଇଟା ସୌଭାଗ୍ୟର କଥା ହେବ ଯଦି ଜଣେ ନିଜକୁ ପୂର୍ଣ୍ଣମାତ୍ରାରେ ସମର୍ପଣ ଭାବ ନେଇ ସେଠାକୁ ଯାଏ । ସ୍ୱାମୀଜୀ କିନ୍ତୁ ସେତକ କରିବାକୁ କାହାକୁ କହି ନାହାନ୍ତି । କିନ୍ତୁ ତୁମେ ଯେ ଦର୍ଶନ କଥା କହୁଚ, ସେ ଦର୍ଶନ ଦେଲେ ତ ? ପ୍ରଥମ କଥା ହେଲା ସେ ମୋଟେ ଦର୍ଶନ ଦିଅନ୍ତି ନାହିଁ । ଖୁବ୍ କମ୍ । ସେମିତି କେହି ବିଶିଷ୍ଟ ଭକ୍ତ ହେଇଥିଲେ ତାଙ୍କ କଥା ଅଲଗା । ସ୍ୱତନ୍ତ୍ର ଦର୍ଶନର ବ୍ୟବସ୍ଥା ଅଛି । ତଥାପି ଅନେକ ସମୟରେ ବହୁ ବଡ଼ ଭକ୍ତ ଫେରି ଯାଆନ୍ତି । ଅସଲ କଥା ହେଉଚି ସେ ପ୍ରାୟ ସବୁବେଳେ ଧ୍ୟାନସ୍ଥ ଥାଆନ୍ତି । ତାଙ୍କୁ କେହି ଦେଖନ୍ତି ନାହିଁ । ତଥାପି ବେଳେ ବେଳେ ସାଧାରଣ ଦର୍ଶନ ମିଳେ । ତାହା ପୁଣି ଶୁଭ ମୁହୂର୍ତ୍ତ ଉପରେ ନିର୍ଭର କରେ । ତେବେ ସ୍ୱାମୀଜୀ କୁଆଡ଼େ କହିଛନ୍ତି ତାଙ୍କର ଶହେ ବର୍ଷ ପୂରଣ ହେଇଗଲେ ସେ ପ୍ରତି ସପ୍ତାହରେ ଥରେ ସାଧାରଣରେ ଦର୍ଶନ ଦେବେ ଏବଂ ଭକ୍ତମାନଙ୍କ ପ୍ରଶ୍ନର ଉତ୍ତର ମଧ ଦେବେ । ଶହେ ପୂରିବାକୁ ଆଉ ବର୍ଷେ ବାକି ଅଛି । ଘନ ହସିଲା ଓ ସ୍ୱାମୀଜୀଙ୍କ ଉଦ୍ଦେଶ୍ୟରେ ଦୁଇ ହାତଯୋଡ଼ି ମୁଣ୍ଡରେ ଲଗାଇଲା ।

ସୁବ୍ରତବାବୁ ଏମିତି ଗୋଟାଏ ସୁଯୋଗ ହାତଛଡ଼ା କରିବାକୁ ଚାହୁଁ ନଥିଲେ । ଏତେ ବଡ଼ ବାବାଙ୍କ ଦର୍ଶନ ଯଦି ମିଳିଯାଏ ତେବେ ପରମ ସୌଭାଗ୍ୟର କଥା ହେବ । ଏତିକି ବେଳେ ମନଟା

ପିତା ହୋଇଉଠିଲା - ତାଙ୍କ ସ୍ତ୍ରୀଙ୍କ କଥା ମନେପଡ଼ିବାରୁ । ତନୁଜା ଯଦି ଆଜି ସାଥିରେ ଆସି ଥାଆନ୍ତେ ତେବେ ଏ ପ୍ରକାର ଗୋଟିଏ ତୀର୍ଥ ଦର୍ଶନର ସୁଯୋଗ ମଧ୍ୟ ତାଙ୍କୁ ମିଳି ଥାଆନ୍ତା । ତୀର୍ଥ ନୁହେଁ ତ ଆଉ କଅଣ ? ଶାସ୍ତ୍ର ଅନୁସାରେ ସ୍ତ୍ରୀକୁ ନ ନେଇ କୌଣସି ତୀର୍ଥକୁ ଯିବା କଥା ନୁହେଁ । 'ଅର୍ଦ୍ଧାଙ୍ଗିନୀ' ଶବ୍ଦଟା ଏଥିରୁ ଆସିଥିବ ବୋଧେ । ଧର୍ମ ଓ ଅଧର୍ମ ସବୁଥିରୁ ତାଙ୍କର ପ୍ରାପ୍ୟ ଅଧେ । ତେଣୁ ପୁଣ୍ୟ ତୀର୍ଥକୁ ଗଲେ ଯୋଉ ପୁଣ୍ୟ ମିଳେ ତାକୁ ଏକୁଟିଆ ସେ କେମିତି ଗ୍ରହଣ କରିବେ ?

କିନ୍ତୁ ତନୁଜା ଯେ ଜଣେ ନାସ୍ତିକ ଏ କଥା ମନେ ପଡ଼ିବାରୁ ସେ ତାଙ୍କ ଉପରେ ଖୁବ କ୍ଷୁବ୍ଧ ହୋଇ ଉଠିଲେ । ପୂଜା, ଦାନ, ଦକ୍ଷିଣା, ଯଜ୍ଞ ଇତ୍ୟାଦି ପ୍ରତି ବୀତସ୍ପୃହ ହେବା ହିନ୍ଦୁ ନାରୀ ପକ୍ଷେ ମୋଟେ ମଙ୍ଗଳକର ନୁହେଁ । କିନ୍ତୁ ସୁବ୍ରତବାବୁ ଜାଣନ୍ତି ତନୁଜା ବାବାଙ୍କ ନାଁ ଶୁଣିଲେ ଖଣ୍ଡେ ବାଟ ଡେଇଁ ପଡ଼ିବେ । ସାଧୁ ସନ୍ନ୍ୟାସୀମାନଙ୍କ ପ୍ରତି ତାଙ୍କର ଧାରଣା ମୋଟେ ଭଲ ନାହିଁ । ସେମାନଙ୍କ ପ୍ରତି ଅତି କଟୁ ମନ୍ତବ୍ୟ ସେ ପ୍ରୟୋଗ କରନ୍ତି । ଏଇ ସମୟରେ ଖୁଡ଼ୀ ଥିଲେ କେତେ ଭଲ ହୋଇ ନଥାଆନ୍ତା ? ଘନ କହିଲା ସୁବ୍ରତଙ୍କୁ । ଆମେ ସମସ୍ତେ ଏକାଠି ଚାଲିଯାଇ ଥାଆନ୍ତୁ ।

ମୁଁ ସେଇ କଥା ହିଁ ଭାବୁଥିଲିରେ ଘନ । କିନ୍ତୁ ସେ ତ ମୋଟେ ଏ ସବୁ କଥାରେ ବିଶ୍ୱାସ କରେ ନାହିଁ ।

କିନ୍ତୁ ସେ ତ ଧର୍ମ ବିରୋଧୀ ନୁହେଁ ।

ନା, ସେ ବିରୋଧ କରନ୍ତି ନାହିଁ ସତ କିନ୍ତୁ ସମର୍ଥନ ମଧ୍ୟ କରନ୍ତି ନାହିଁ । ତାଙ୍କର ମତ କଅଣ ଜାଣୁ ? ଧର୍ମ ଓ ଭକ୍ତି ଭାବ ମନେ ମନେ ରଖ । ବାହାରକୁ ଦେଖେଇବା ମାନେ କିଛି ନାହିଁ । ବେକରେ ମୋଟା ରୁଦ୍ରାକ୍ଷମାଳା, ମଥାରେ ଚନ୍ଦନ ଓ ତିଳକ । ଦେହରେ ନାମମାଳି, ଏ ସବୁ ପ୍ରଚାର ଉଦ୍ଦେଶ୍ୟରେ କରାଯାଏ । ଦେବଦେବୀଙ୍କୁ ମନ ଭିତରେ ରଖ ।

ସେ କଥା ବି ଠିକ୍ । କିନ୍ତୁ ବାହ୍ୟ ଲକ୍ଷଣ ସବୁ ନିଜକୁ ସମର୍ପଣ ଭାବ ନେଇ କରାଯାଏ - କହିଲା ଘନ । ହଉ ଛାଡ଼ ସେ କଥା । ଆମେ ଏ'ଠୁ କାଲି ସକାଳେ ବାହାରି ଯିବା । କଲିକତା ଦେଇ ଗଲେ ଆମେ କାଲି ସଂଧ୍ୟା ସୁଦ୍ଧା ସେ'ଠି ପହଞ୍ଚିପାରିବା ।

ଦିବ୍ୟଭୂମିଟାକୁ ସେ ଏମିତି ଭାବରେ ଦେଖିବେ ବୋଲି ସୁବ୍ରତ ମୋଟେ କଳ୍ପନା କରି ନଥିଲେ । କଅଣ ତାକୁ କହି ହେବ ? ସର୍ଗପୁରୀ ନା ଆଉ କିଛି ? ଘଞ୍ଚ ଅରଣ୍ୟ ଭିତରେ ଅତ୍ୟନ୍ତ ମନୋରମ ଆଶ୍ରମ । ଅରଣ୍ୟ ପାଖକୁ ଲାଗି ବିରାଟ ପାହାଡ଼ । ପାହାଡ଼ ମଥାରୁ ତଳକୁ ଡେଇଁଟି ବିରାଟ ଜଳପ୍ରପାତ । ଜଳପ୍ରପାତ ପାହାଡ଼ ତଳକୁ ଆସି ହେଇ ଯାଇଚି ଝରଣା ।

ତା'ରି ଭିତରେ ଆଶ୍ରମ । ଏମିତି ଶାନ୍ତ, ସୁନ୍ଦର ପରିବେଶ ସୁବ୍ରତବାବୁ ଆଗରୁ କେବେ ଦେଖି ନଥିଲେ । ସେ ପଣ୍ଡିଚେରିରେ ଅରବିନ୍ଦ ଆଶ୍ରମ ଦେଖିଛନ୍ତି, ସେ ପୁଟପର୍ତ୍ତୀରେ ସତ୍ୟସାଇ ବାବାଙ୍କ ଆଶ୍ରମ ଦେଖିଛନ୍ତି, ସେ ମଧ କନ୍ୟାକୁମାରୀରେ ବିବେକାନନ୍ଦ ଆଶ୍ରମ ଦେଖିଛନ୍ତି, ସେ ମଧ ଠାକୁର ଅନୁକୂଳ ଚନ୍ଦ୍ରଙ୍କ ଆଶ୍ରମ ଦେଖିଛନ୍ତି କିନ୍ତୁ ଦିବ୍ୟଭୂମିର ପ୍ରାକୃତିକ ପରିବେଶ ସେ ଆଉ କୋଉଠି ଦେଖି ନାହାନ୍ତି ।

ଜୀବନଟା ଧନ୍ୟ ହେଇ ଗଲାରେ ଘନ । ତୁ ନଥିଲେ ମୁଁ କଅଣ ଏମିତି ଗୋଟାଏ ସ୍ଥାନର ସନ୍ଧାନ ପାଇ ଥାଆନ୍ତି ? ମୋର ମନେହେଉଚି ଏ'ଠି ଯେଉଁମାନେ ରହିବାର ସୁଯୋଗ ପାଇଛନ୍ତି ସେମାନେ କେବେବି ମଣିଷ ହେଇ ନଥିବେ । ସେମାନେ ସବୁ ମଣିଷ ରୂପରେ ଦେବତା । ଏ ମାଟିଟା ଏମିତି କଅଣ କିରେ ଘନ । ଏ ମାଟିରେ ମୁଁ ପାଦ ଦେଲା ପରଠୁ ମୋତେ ଲାଗୁଚି ମୁଁ ଗୋଟାଏ ଭିନ୍ନ ମଣିଷରେ ପରିଣତ ହେଇଯାଇଚି । ମୁଁ ଆଉ ମୁଁ ହେଇ ନାହିଁ । ମୋ' ଭିତରେ ଗୋଟାଏ ବିରଳ ଅନୁଭବ ମୋତେ ଯେମିତି ଅସ୍ତବ୍ୟସ୍ତ କରି ପକାଉଚି । ମୁଁ ଯେମିତି ଆଉ ଗୋଟିଏ ପୃଥିବୀରେ ଏବେ ପ୍ରବେଶ କରୁଚି । ମୋର ନବଜନ୍ମ ହେଲା କି ?

ଆପଣ ତ ଏଇ ଆସିଲେ ଦାଦା, ଦିନଟିଏ ରହନ୍ତୁ । ତାପରେ ଦେଖିବେ! ଆପଣ ଏ ଯାଏଁ ଆଶ୍ରମ ଭିତରକୁ ଯାଇନାହାନ୍ତି । ଆଶ୍ରମର ବିଭିନ୍ନ ସ୍ଥାନ ଦେଖି ନାହାନ୍ତି । ତା'ର ଲାଇବ୍ରେରୀ, ପୂଜାମଣ୍ଡପ, ପ୍ରାର୍ଥନା ଓ ଯୋଗମନ୍ଦିର ଏବଂ ଆଶ୍ରମର ମିଉଜିୟମ୍ - ଏସବୁ ଆପଣ ଦେଖନ୍ତୁ । ସବୁଠାରୁ ସୁନ୍ଦର ଓ ମନୋରମ ସ୍ଥାନ ହେଲା ତାର ସାଧନା କେନ୍ଦ୍ର । ସେଠି ତପସ୍ୟାରତ ଅନ୍ତେବାସୀମାନେ ଦିନ ଦିନ କିମ୍ବା ମାସ ମାସ ଧରି ବସି ଥାଆନ୍ତି । ପିନ୍ ଡ୍ରପ ସାଇଲେନ୍ସ । ସେ'ଠି ପବନ ବି ନିରବ ହେଇଯାଏ । ଆଉ ଜହ୍ନରାତିରେ ଯଦି ଆପଣ ସେ ଜାଗାକୁ ଯିବେ ଦାଦା, ଦେଖିବେ ଜହ୍ନ ଉଠିଥିଲେ ଯେତିକି ଆଲୁଅ, ଅନ୍ଧାର ରାତ୍ରିରେ ମଧ ସେତିକି ଆଲୁଅ । କି ବିଚିତ୍ର କଥା କହିଲେ । ଆଶ୍ରମବାସୀମାନେ କହନ୍ତି ରାତିରେ କଅଣ ଦିନରେ ମଧ ସେ'ଠି ବାଘ

ଭାଲୁ ବୁଲୁଚି । କିନ୍ତୁ ସମସ୍ତଙ୍କ ପାଟି ଯେମିତି ଚୁପ୍ । ସେମାନଙ୍କ ନିଃଶ୍ୱାସରୁ ମଧ୍ୟ ଶବ୍ଦ ବାହାରେ ନାହିଁ ।

ତୁ କଅଣ କହୁଚୁ ଘନ ?

ଆପଣ ଆସିଲା ବେଳେ ଦେଖିଲେ ତ ହରିଣପଲ ?

"ଆପଣଙ୍କୁ ୩୩୦ ନମ୍ବରରେ ବାବୁ ଡାକୁଛନ୍ତି ।" ଜଣେ ସେବିକା ଆସି ସେମାନଙ୍କୁ ଖବର ଦେଲା । ୩୩୦ ନମ୍ବର କୋଠରିରେ ପ୍ରଦୀପବାବୁ ।

"ତୁମେ ଝିଅ ଓଡ଼ିଆ ଜାଣ ?" ସୁବ୍ରତ ପଚାରିଲେ ।

"ମୁଁ ଓଡ଼ିଶାର ।" କହିଲା ଝିଅଟି ।

"କେତେ ଓଡ଼ିଆ ଏ'ଠି ରୁହନ୍ତି ।?"

"ଅନେକ ଅଛନ୍ତି । ଝିଅ ପୁଅ ସମସ୍ତେ ।"

"ତୁମ ବାପା- ମାଆ ?"

ଝିଅଟି ନିରବ ହେଇଗଲା । ଆଗକୁ ପଛକୁ ଦେଖିଲା ତା'ପରେ ଶଂକିତ ସ୍ୱରରେ କହିଲା, "ଆପଣମାନେ ଏବେ ଆସିବେ । ମୁଁ ଆସୁଚି ।" ସେ ଚାଲିଗଲା । କିଏ ଏ ଝିଅ ? କୋଉଠି ଦେଖିଥିଲା ଭଳି ମନେହେଉଚି । କୋଉଠି ଦେଖିଛନ୍ତି ? ଆଃ ଆଉ ଟିକିଏ ଅପେକ୍ଷା କଲାନି ! ତାକୁ ପଚାରି ହେଲାନି । ବାପ ମାଆ କଥା ପଚାରିଲା ବେଳକୁ ଏମିତି ଭୟ ପାଇଗଲା କାହିଁକି ? ତେବେ କଅଣ ଅସଲ ପରିଚୟ ଦେବାକୁ ମନା ଅଛି ଆଶ୍ରମରେ । କିନ୍ତୁ କାହିଁକି ? ତାଙ୍କର ମନେପଡ଼ିଲା, ଆରେ ଇଏତ ସେଇ ଝିଅ ବୋଧେ । ଯାହାକୁ ତା'ର ଭାଇ ସହିତ ଭେଟି ଥିଲେ ରାଉରକେଲା ଆସିବା ଦିନ ଆମ୍ବବାଗାନ ଛକରେ । ଏକା ସାଥିରେ ଟେମ୍ପୋରେ ଆସିଥିଲେ । ହଁ ତ ! ତା' ଛଡ଼ା ଆଉ କିଏ ହେଇପାରେ ?

କିନ୍ତୁ ସେ ଏ'ଠି ?

ସୁବ୍ରତ ତା' କଥା ଯେତିକି ଭାବୁଥିଲେ ସେତିକି ଅଧିକ ଗୋଟାଏ ଅସ୍ପଷ୍ଟ କୁହେଳିକା ଭିତରେ ବୁଡ଼ି ଯାଉଥିଲେ ।

ଆଉଥରେ ଦେଖନ୍ତେ କି ତା'କୁ ।

କଅଣ ଏମିତି ଭାବୁଛନ୍ତି ମ ? ଘନ କହିଲା, ଚାଲନ୍ତୁ ଯିବା । ଶ୍ରୀମୟୀ ଠିକ୍ ୮ଟା ୧୫ରେ ପ୍ରଦୀପ ।ବୁଙ୍କ ପାଖକୁ କଥାବାର୍ତ୍ତା କରିବା ପାଇଁ ଆସିବେ ବୋଲି ଖବର ପଠେଇଛନ୍ତି ।

ଅଠଟା ପନ୍ଦର କାହିଁକି ? ଏ ଯାଏଁ ଆସିନାହାନ୍ତି ?

ଆଶ୍ରମର ଶୃଙ୍ଖଳା ବଡ଼ କଥା । ସମସ୍ତେ କିଛି କିଛି କାମରେ ବ୍ୟସ୍ତ ଥାଆନ୍ତି । କାମ ରୁଟିନ୍ ଅନୁସାରେ । ଏପାଖ ସେପାଖ ହେବ ନାହିଁ ।

କାହିଁ ଶ୍ରୀମୟୀ ଆସିଲେ ନି ତ ? ଆଠଟା ତିରିଶ ହେଲାଣି । ଯାହା ଥରେ ନିର୍ଦ୍ଧାରିତ ହେଇଥାଏ ତା'ର ପରା ବ୍ୟତିକ୍ରମ ହୁଏନି ? ପଚାରିଲେ ସୁବ୍ରତ ।

ଆଉ କିଛି ଅସୁବିଧା ହେଲା ବୋଧେ । ସେ ଝିଅଟି କୁଆଡ଼େ ଗଲା ? ତାକୁ ପଠାଇଲେ ହୁଅନ୍ତା । ଘନ କହିଲା ।

ବେଶି ବ୍ୟସ୍ତ ହେଉଥିଲେ ପ୍ରଦୀପବାବୁ । ସେ ବାରମ୍ବାର ଘଡ଼ିକୁ ଦେଖୁଥିଲେ । ମହିଳାମାନଙ୍କ ଏରିଆକୁ ଯିବାରେ ଯଦି ବାଧା ନ ଥାଆନ୍ତା ତେବେ ସେ କେତେବୋଲୁ ନିୟମର ପାଚେରି ଡେଇଁ ସେ ପାଖକୁ ଯାଇ ଶ୍ରୀମୟୀଙ୍କୁ ଭେଟିସାରନ୍ତେଣି । ଆଶ୍ରମର ନିୟମକାନୁନ ପ୍ରତି ତାଙ୍କ ଅଶ୍ରଦ୍ଧା ଭାବ ତାଙ୍କ ମୁହଁରେ ଫୁଟିଉଠୁଥିଲା । ସ୍ୱାମୀ- ସ୍ତ୍ରୀକୁ ଅଲଗା କରିବା କଥାଟା ତାକୁ ମୋଟେ ଭଲ ଲାଗୁ ନଥିଲା । ସ୍ୱାମୀର ଅଜ୍ଞାତସାରରେ ବା ତାକୁ ବିନା ଅନୁମତିରେ ମଧ୍ୟ କୁହାଯାଇପାରେ, ଯଦି ସ୍ତ୍ରୀ ତା'ର ଗହଣା ଓ ବ୍ୟାଙ୍କ ବାଲାନ୍ସ ନେଇ ପଳେଇ ଆସିଥାଏ ତାକୁ ଆଶ୍ରମ କୋଉ ଆଇନ ଭିତରେ ରଖିପାରିବ ? କିନ୍ତୁ ସେ କାହାକୁ ଏଥିପାଇଁ ଦୋଷ ଦେବେ ? ନିଜକୁ ନା ଶ୍ରୀମୟୀଙ୍କୁ ନା ଏ ଆଶ୍ରମର ନିୟମକୁ ? ସେ ସ୍ୱାମୀଜୀଙ୍କୁ ଏଥିପାଇଁ ଦୋଷ ଦେଇପାରିବେ କି ? ସ୍ୱାମୀଜୀଙ୍କ ସପକ୍ଷରେ ଯୋଉ ହାଓ୍ୱା ସେତେବେଳେ ସୃଷ୍ଟି ହେଇଥିଲା ତାକୁ ସେ ମଧ୍ୟ ସେତେବେଳେ ସମର୍ଥନ କରିଥିଲେ । ସେଥିରେ ତାଙ୍କର ଦୋଷ ଥିଲା କି ?

ନା, ଶ୍ରୀମୟୀ ଆଉ ଆସିବେନି । ସନ୍ଦେହରେ ପଡ଼ିଲେ ପ୍ରଦୀପବାବୁ । ଏମିତି କଅଣ ଅସୁବିଧା ହେଇପାରେ ? ସେ ନିଜେ ଆଉ ନିଜର ମତ ବଦଳେଇଲେ ନି ? କିନ୍ତୁ କାହିଁକି ? ତାଙ୍କୁ ଆଉ କେହି ଅନ୍ୟ କିଛି କହିଲା ?

ସାରା ରାତି ପ୍ରଦୀପବାବୁ ଖାଲି ବିଛଣାରେ ପଡ଼ି ଛଟପଟ ହେଲେ । ସେ ଭାବୁଥିଲେ ଏଇ ମୁହୂର୍ତ୍ତରେ ସେ ଯଦି ଶ୍ରୀମୟୀଙ୍କୁ ଦେଖନ୍ତେ ତେବେ ସେ କ୍ଷମା ମାଗି ନିଅନ୍ତେ । ସେ ଖାଲି ପଚାରନ୍ତେ "ମୋର ଅପରାଧଟା କଅଣ କୁହ ।" ତେବେ ସେ ଗୋଟିଏ କଥାରେ ଅନ୍ତତଃ ନିଶ୍ଚିନ୍ତ ଥିଲେ ଯେ ଶ୍ରୀମୟୀ କୌଣସି ମନ୍ଦ ଉଦ୍ଦେଶ୍ୟ ନେଇ ଏଠାକୁ ଆସି ନାହାନ୍ତି । ଶ୍ରୀମୟୀଙ୍କୁ ସେସବୁ ସନ୍ଦେହର

ଉର୍ଦ୍ଧ୍ୱରେ ରଖିହେବ । ତଥାପି ଲୋକାପବାଦକୁ ଏଡ଼ିଦେଇ ହେବ ନାହିଁ । ସୀତାଙ୍କୁ ଲୋକାପବାଦ ଉର୍ଦ୍ଧ୍ୱରେ ରଖିହେଲା କି ?

ଏଇ ସବୁ କଥା ଭାବିଲା ବେଳକୁ ତାଙ୍କ ଭିତରେ ଗୋଟାଏ ଉର୍ଦ୍ଧ୍ୱଶ୍ୱାସ ଉଠି ଆସୁଥିଲା ।

( ୮ )

ସେ ଦିନ ରାତିରେ ଖାଇସାରି ସୁବ୍ରତବାବୁ ଆଶ୍ରମର ପୂର୍ବ ପାଖରେ ଥିବା ବଗିଚା କଡ଼େ କଡ଼େ ଯୋଉ ସରୁ ପାଦଚଲାରାସ୍ତା ଅଛି ସେଥିରେ ପଦଚାରଣ କରିବାକୁ ଆରମ୍ଭ କରି ଦେଲେ । ଏଇଟା ତାଙ୍କର ନିତିଦିନିଆ ଅଭ୍ୟାସ । ସବୁଠି ଥଣ୍ଡା ପବନ, ଫୁଲର ମହମହ ବାସ୍ନା, ବଗିଚା ଭିତରେ ଜହ୍ନର ଜୁଆର ଏ ସବୁ । ସୁବ୍ରତ ଭାବୁଥିଲେ, କେବଳ ଆଶ୍ରମରେ ହିଁ ସମ୍ଭବ ହେଇପାରେ । କିଏ ସଜେଇଚି ଏ ଆଶ୍ରମକୁ ? ଏମିତି ସାଜସଜ୍ଜା ସେ ଦିଲ୍ଲୀର ରାଷ୍ଟ୍ରପତି ଭବନରେ ମଧ ଦେଖି ନାହାନ୍ତି । ଚାକିରିରେ ଥିଲା ବେଳେ ସେ ଥରେ LTC ନେଇ ଉତର ଭାରତ ବୁଲିବାକୁ ଯାଇଥିଲେ । ରାଷ୍ଟ୍ରପତି ଭବନର ମୋଗଲ ଗାର୍ଡନ୍ ବୁଲି ଦେଖିଲା ବେଳେ ଗାଇଡ୍ ତାଙ୍କୁ କହିଥିଲା ଏହାହିଁ ଭାରତର ସର୍ବୋତ୍କୃଷ୍ଟ ଫୁଲବଗିଚା । ସେ ଦିନ ତାକୁ ଦେଖି ସେ ମୁଗ୍ଧ ହେଇଯାଇଥିଲେ । କହିଥିଲେ, "ମର୍ତ୍ତ୍ୟପୁରୀରେ ଏଡ଼େ ସୁନ୍ଦର ବଗିଚା କଅଣ ସମ୍ଭବ ?"

ଆଜି ସେ ଆଶ୍ରମର ପରିବେଶ, ଗଛପତ୍ର, ଫୁଲବଗିଚା ଓ ତା'ର ବର୍ଣ୍ଣବିଭା ଦେଖି ଭାବିଲେ ଏଇଟା ତ ରାଷ୍ଟ୍ରପତି ଭବନର ଚମତ୍କାରିତାକୁ ବଳିଯାଇଛି । ରାଷ୍ଟ୍ରପତି ଭବନରେ କୃତ୍ରିମତା ପ୍ରାଧାନ୍ୟ ଲାଭ କରିଥିଲା ବେଳେ ଆଶ୍ରମରେ ବିରାଜୁଚି ପ୍ରାକୃତିକ ପରିବେଶ । ଏ ପରିବେଶରେ ମଣିଷ ତାର ଅସ୍ତିତ୍ୱ ଭୁଲି ଯାଏ । ଦୁଃଖ, କ. ଯନ୍ତ୍ରଣା, ପୀଡ଼ନ ସବୁ ଉଭେଇ ଯାଏ ମନରୁ ।

ଏଥିରେ ଦୈବୀଶକ୍ତି ନାହିଁ ବୋଲି କେମିତି କହି ହେବ ? ଏ'ଠି ମଣିଷ ଆଉ ମଣିଷ ହେଇନାହିଁ । ତା'ର ରୂପାନ୍ତର ଘଟିଚି । ସେ ଏକ ଭିନ୍ନ ମଣିଷରେ ପରିବର୍ତ୍ତିତ ହେଇ ଯାଇଚି । ରୋଗ, ଶୋକ, ଜରା ବିବର୍ଜିତ ଆଉ ଏକ ମଣିଷ । ଯାହା ବୁଦ୍ଧଦେବ ଚାହିଁଥିଲେ ?

ସୁବ୍ରତ ଅନେକ ବାଟ ଚାଲିଚାଲି ଥକି ପଡ଼ିଲେ କି କଅଣ, ମୋଟା ଘାସର ଚାଲିଚା ପାଖରେ ତିଆରି ହେଇଥିବା ଗୋଟିଏ ସୁନ୍ଦର ପତ୍ରପୁଷ୍ପ ଘେରା ବେଞ୍ଚ ଉପରେ ବସି ପଡ଼ିଲେ । ସେ ଭାବୁଥିଲେ କି ଅଦ୍‌ଭୁତ ମାୟା ଏ ଆଶ୍ରମର ? ସମଗ୍ର ମାୟା ହିଁ ତାଙ୍କୁ ଯେମିତି ଆଚ୍ଛନ କରି ପକେଇଲା ।

"କିଏ ?'

ଚମକି ପଡ଼ିଲେ ସୁବ୍ରତ । ଝିଅଟିଏ ଆସି ତାଙ୍କ ପାଦ ଛୁଇଁଲା ।

"କିଏ ତୁମେ ମାଆ ?"

"ମୋତେ ଆପଣ ଚିହ୍ନିପାରୁଛନ୍ତି ମଉସା ? ମୁଁ ଗୌତମ ମହାନ୍ତିଙ୍କ ସାନଝିଅ ଶ୍ରାବଣୀ । ମୋ' ବାପା ଆପଣଙ୍କଠୁ ଢେର ସାନ ଥିଲେ ଅବଶ୍ୟ ।"

"ତୁ ଗୌତମର ଝିଅ ? ତୁ ଏ'ଠି ?"

ଶ୍ରାବଣୀ ମୁହଁ ପୋତିଲା । ସୁବ୍ରତ ଦେଖିଲେ ଶ୍ରାବଣୀ ବୋଧେ ନିଜ କଥା କିଛି ନ କହିବା ପାଇଁ ମୁହଁ ତଳକୁ କଲା । 'କିନ୍ତୁ କାହିଁକି ?'

"ଏ'ଠି ମୋ ନାଁ ଶ୍ରାବଣୀ ନୁହେଁ, ଗୋପା । ମୋତେ ସମସ୍ତେ ଗୋପା ନାଁରେ ଡ଼ାକନ୍ତି । ଏ ନାଁ ବାବା ଦେଇଛନ୍ତି ।"

"ତା' ମାନେ ତୁ ଏଠିକା ବାସିନ୍ଦା ?"

ସୁବ୍ରତଙ୍କର ମନେପଡ଼ିଲା । ଅନେକ ଦିନ ତଳର କଥା । ଗୌତମର ଗୋଟିଏ ଝିଅ ହଠାତ ଦିନେ କଲେଜରୁ ଆଉ ଫେରି ନଥିଲା । ଅନେକ ଖୋଜାଖୋଜି ହେଲା । କିଛି ଫଳ ହେଇ ନଥିଲା । କିଏ କହିଲା ସେ ଅଜାତିରେ ପଶିଲା । ଆଉ କିଏ କହିଲା ତା'ର ବାରମ୍ବାର ବାହାଘର ଭାଙ୍ଗି ଯିବାରୁ ସେ ନଈକୁ ଡ଼େଇଁ ଆତ୍ମହତ୍ୟା କରିଦେଇଚି । ଆଉ କିଏ କହିଲା ପ୍ରେମରେ ବିଫଳତା ହିଁ ତାର କାରଣ । ସୁବ୍ରତ ସେତେବେଳ ଚାକିରିରେ ଥିଲେ । ଦୁଃଖ, ଅପବାଦ ଓ ନିନ୍ଦାରେ ଗୌତମର ମୃତ୍ୟୁ ହେଲା ହାର୍ଟ ଆଟାକ୍‌ରେ । ତା' ସ୍ତ୍ରୀ ସେଇ ଦିନଠୁ ବିଛଣା ଧରିଚି । ଗୌତମର ତିନି ଝିଅ । ଦୁଇ ଜଣ ବାହାହେଇ ଯାଇଥିଲେ । ସାନଟିକୁ ସେ ଘର ଜୁଆଁଇ କରି ରଖି ଥାଆନ୍ତା । କିନ୍ତୁ କେହି ରାଜି ହେଲେ ତ ?

ଗୋଟାଏ ଛାଇଆଲୁଅ ସୁବ୍ରତଙ୍କ ଆଗରେ ବିଛାଇ ହେଇଗଲା । ସେ ମନେ ପକେଇବାକୁ ଚେଷ୍ଟା କଲେ ପୁରୁଣା ଶୁଣିଥିବା କଥାକୁ ।

"ତୁ କଅଣ ଏ'ଠି ତେବେ ସ୍ଥାୟୀ ହେଇଗଲୁ ? ଆଉ ବାପା-ମାଆ କଥା ମନେପଡ଼ିଲା ନି ? ସାଙ୍ଗସାଥୀ, ବନ୍ଧୁବାନ୍ଧ, ଗାଁ ଭୂଇଁ ତୁ ଆଉ କିଛି ମନେରଖିନୁ ନା ?"

ଗୋପା କଇଁକଇଁ ହେଇ କାନ୍ଦିଲା ।

ସୁବ୍ରତ ତା' ହାତ ଧରି ତାକୁ ବେଞ୍ଚରେ ବସେଇ ଦେଲେ । କହିଲେ "ମୁଁ ତୋତେ ପୁରୁଣା

କଥା ପଚାରି ଶୁଣାଇ ଭୁଲ୍ କଲି । ଏବେ ଆଉ ସେକଥା ଭାବି କିଛି ଲାଭ ନାହିଁ । ଯୋଉ ରାସ୍ତାରେ ତୁ ଆସିସାରିଚୁ ସେଥିରୁ ତୁ କଅଣ ଫେରିପାରିବୁ ?"

ସେ ଗୋପର ମୁଣ୍ଡକୁ ସ୍ନେହରେ ଆଉଁଶି ଦେଲେ।

ଝିଅଟି କହିଲା, "ମୁଁ ଯେତେବେଳେ ଗେଷ୍ଟ ହାଉସ୍ ରେଜିଷ୍ଟର୍‌ରେ ଆପଣଙ୍କ ନାଁ ଦେଖିଦେଲି, ସେତେବେଳେ ଆଉ ଧୈର୍ଯ୍ୟଧରି ରହିପାରିଲିନି । କାମଛାଡ଼ି କେମିତି ଭେଟିବି ଆପଣଙ୍କୁ ।"

"ତୋର କଅଣ ଏବେ କିଛି କାମ ନାହିଁ ?"

କାମ କେବେ ବି ସରେ ନାହିଁ ।

"ତୋତେ କି କାମ ଦିଆଯାଇଛିରେ ?"

"କାମ ତ ଅନେକ । ବାବାଙ୍କ ସେବା । ମୁଁ ଖୁସିରେ ଅଛି ମଉସା । ଟିକିଏ ବି ଦୁଃଖ ନାହିଁ । ଆପଣତ ଦେଖୁଛନ୍ତି ସମସ୍ତଙ୍କୁ । ଛୋଟ ହେଉ ବଡ଼ ହେଉ, ବାସନ ଧୁଆ ହେଉ ବା ଫୁଲତୋଳା ହେଉ କାହାରି ମନରେ ଟିକିଏ ବି ଦ୍ୱିଧା ନାହିଁ ।"

"ସେଇଥିପାଇଁ ତୁ ଏବେ କାନ୍ଦୁଥିଲୁ କି ରେ ?" ସେ ତା' ମୁହଁକୁ ଟେକି ଧରି କହିଲେ "ମୋ ମୁହଁକୁ ଟିକିଏ ଦେଖିଲୁ ।'

ଗୋପା ମୁହଁ ଟେକିଲା କିନ୍ତୁ ଆଖି ବୁଜିଦେଲା । ତା'ର ମନେହେଉଥିଲା ସେ ଯେମିତି ଅନେକ ଛୋଟ ହେଇଯାଇଚି ଏବଂ ତା' ଚିବୁକକୁ ଧରି ତା' ବାପା ହିଁ ତାକୁ ପଚାରୁଛନ୍ତି ତା'ର ଦୁଃଖ କଥା । ତରଳି ଯାଉଥିବା ମହମପରି ତିରିଶ ଟପିଥିବା ଗୋପା ଆଜି ଏତେ ଦିନ ପରେ ଯେମିତି ପିତୃ ସ୍ନେହରେ ଲତ୍‌ପତ୍ ହେଇଯାଉଚି । ଗୋଟାଏ ଅପୂର୍ବ ଅନୁଭବ ତାକୁ ଘେରି ପକାଉଥିଲା । ଅନେକ ଦୂରରେ ହଜେଇଥିବା ନିଜକୁ ପାଇଲାପରି ।

କହୁନୁ ଏ ଆଶ୍ରମରେ ତୋର କାମ କେମିତି ବଣ୍ଟାଯାଇଛି ? ତୋ' ସାଥିରେ ତ ଆହୁରି ଅନେକ ଅଛନ୍ତି । ଅଧେ ତ ବୋଧେ ଆମ ଓଡ଼ିଶାରୁ ।

ଆମ ଭିତରେ କିନ୍ତୁ ସେ ଭାବ ନାହିଁ । କିଏ ଓଡ଼ିଆ କିଏ ବଂଗାଳୀ ଆମେ ଜାଣୁନା । ଆମର ଜାତି ଗୋଟାଏ ।

ବାଃ ଅତି ଚମତ୍କାର ! ଏମିତି ହବା କଥା । ସମସ୍ତେ ଯେତେବେଳେ ବାବାଙ୍କ ଆଶ୍ରାରେ,

ସେତେବେଳେ ତୁମ ଭିତରେ ପାର୍ଥକ୍ୟ କାହିଁକି ରହିବ ? ପାର୍ଥକ୍ୟର ସୀମାରେଖା ଏ'ଠି ମୋଟେ ନଥିବ ।

ଦୂରରୁ ଗୋଟାଏ ଘଣ୍ଟି ଶୁଭିଲା । କୌଣସି ମଠ କି ମନ୍ଦିରର ଘଣ୍ଟି ନ ଥିଲା ।

କଅଣ ଏଇଟା ? ପଚାରିଲେ ସୁବ୍ରତ ।

ସମସ୍ତେ ଯିଏ ଯେଉଠି ଥିବେ ତାଙ୍କ ହଲ୍ ପାଖ ପଡ଼ିଆକୁ ଆସିଲେ ସମସ୍ତଙ୍କର ରୋଲ୍ କଲ୍ ହେବ । ତା'ପରେ ଆସନ୍ତାକାଲି ପାଇଁ ଡିଉଟି ବଣ୍ଟା ହେବ । ଆମେ ମାସଟିଏ ଡାଇନିଂ ହଲରେ ବାସନମଜା ଓ ପୋଛାପୋଛି କରିସାରିଲେ ପର ମାସ ଧୂପ ବଳିବାକୁ ଯାଉଁ । ତା'ପର ମାସ ରନ୍ଧାରନ୍ଧି । ଦେଖୁଚନ୍ତି ତ ଏ'ଠି କେତେ ବଡ଼ ବଡ଼ ହଣ୍ଡା ଓ କରେଇ । ତେବେ ସବୁ କାମ ଇଲେକ୍‌ଟ୍ରି ଓ ଗ୍ୟାସ୍‌ରେ ହୁଏ। ସବୁଠୁ କଷ୍ଟ କାମ ଗୁହାଳରେ । କିନ୍ତୁ ମଉସା ଆପଣ ବିଶ୍ୱାସ କରନ୍ତୁ କଷ୍ଟ ହେଲେ, ମନକୁମନ ଯେମିତି ବାବା ଆସି ପାଖରେ ଠିଆ ହେଇ ଯାଆନ୍ତି ।

"ମୋ' ମାଆ କେମିତି ଅଛି ମଉସା ?" ସେ ସୁବ୍ରତଙ୍କ ହାତକୁ ଧରି ହଲେଇ ଦେଲା ।

ସେ କଥା ଆଉ କାହିଁକି ପଚାରୁଚୁ ? ମୋ'ଠୁ କଅଣ ଶୁଣିବାକୁ ଚାହୁଁ ?

"ମୋତେ ଖାଲି ସେତକ କହି ଦିଅ । ମୋର ସମୟ ହେଇଯାଉଚି । କାଲିଠୁ ପଡ଼ିବ ମୋର ବାର୍ ଘଣ୍ଟିଆ ଡିଉଟି ଧୋବାଘାଟରେ । ଆଉ ଏ ଆଡ଼କୁ ଆସିପାରିବନି ।"

"ତୋ' ମାଆ ଭଲ ଅଛିରେ ଝିଅ । ବେଶ୍ ଭଲ ଅଛି । ଠିକ୍ ଯେମିତି ଏଠିତୁ ଅଛୁ ।" କିନ୍ତୁ ଶେଷ ଧାଡ଼ିଟା କେମିତି କେଜାଣି ତାଙ୍କ ପାଟିରୁ ବାହାରିପାରିଲାନି । କୋଉଠି ଓଠ ତଳେ ଅଟକି ଗଲା ।

ଗୋପା ଚାଲି ଯାଉଥିଲା । କଅଣ ଭାବିଲା କେଜାଣି ଫେରିପଡ଼ି ସୁବ୍ରତଙ୍କୁ ଦେଖିଲା ତା ପରେ କହିଲା "ମୋତେ ଦେଖିଛନ୍ତି ବୋଲି ଗାଁରେ କାହାକୁ କିଛି କହିବେ ନି । ମୋ' ମୁଣ୍ଡରେ ହାତ ରଖି କହିଲେ ?"

ସେ ଚାଲିଗଲା ।

ସୁବ୍ରତ ତା' ଯିବା ବାଟକୁ ଚାହିଁ ରହିଲେ । ମଳିଚିଆ ଜହ୍ନଆଲୁଅରେ ଗୋପାର ପାଦଚଲା ରାସ୍ତାଟା ଆଉ ସଫା ଦେଖା ଯାଉ ନଥିଲା । ଗୋପାର ଗେରୁଆଶାଢ଼ି ଯଦିଓ ବେଶ ସ୍ପଷ୍ଟ ଦେଖି ହେଉଥିଲା କିନ୍ତୁ ତା ପାଦତଳର ବାଟଟା ଗଲା କୁଆଡ଼େ ? ବାଟଟା ଉଭେଇ ଗଲା ନା ଗୋପା

ବାଟ ଛାଡ଼ି ଅନ୍ୟ ବାଟରେ ଚାଲିଗଲା ? ଗୋପା ଓ ତା'ର ବାଟ ଭିତରେ ଯୋଉ ବ୍ୟବଧାନ ରହିଗଲା । ସେଥିରେ କିଏ କାହାକୁ ଠକି ଦେଇଥିବ ?

ସୁବ୍ରତ ରାତିଯାକ ଶୋଇପାରି ନଥିଲେ ।

( ୯ )

ଭୋର୍ ଚାରିଟା ବେଳେ ଯେତେବେଳେ ଆଶ୍ରମ ମାଇକ୍‌ରେ ପ୍ରଚାରିତ ହେଲା ଯେ ଆଜି ପୂର୍ବାହ୍ଣ ଦଶଟା ତିରିଶରେ ସ୍ୱାମୀଜୀ ଭକ୍ତମାନଙ୍କୁ ସାକ୍ଷାତ ଦେବେ ଏବଂ ସେମାନଙ୍କୁ ଆଶୀର୍ବାଦ ଦେବେ ସେତେବେଳ ପ୍ରଦୀପବାବୁ ବିଛଣାରୁ ଉଠି ପଡ଼ିଲେ । ଏଇ ସକାଳଟାରେ ତାଙ୍କୁ ସାମାନ୍ୟ ନିଦ ଆସି ଯାଇଥିଲା ।

ଠିକ୍ ନଅଟା ବେଳେ ସୁବ୍ରତ ଓ ଘନ ଆସି ପହଞ୍ଚିଲେ । ଜଳଖିଆ ଖାଇ ସେମାନେ ଯେତେବେଳେ ଯାଇ ଚାରି ନମ୍ବର ହଲ୍‌ରେ ପହଞ୍ଚିଲେ ସେତେବେଳେ ଲୋକ ଆସିବା ଆରମ୍ଭ ହେଇଯାଇଥିଲା । ଚାରି ନମ୍ବର ହଲ୍‌ଟା ସବୁଠାରୁ ବଡ଼ ହଲ୍ । ସାଜସଜ୍ଜା ବେଶ୍ । ଚାରିଆଡ଼େ ଖାଲି ଫୁଲ ଆଉ ଫୁଲ । ମହମହ ବାସନାରେ କମ୍ପୁଚି ।

ସୁବ୍ରତବାବୁ ସମସ୍ତଙ୍କ ଆଗରେ ଯାଇ ବସିପଡ଼ିଲେ । ତାଙ୍କୁ ଦେଖି ତାଙ୍କ ପାଖରେ ବସିଲେ ଘନ ଓ ପ୍ରଦୀପ ।

ଏଇ ଯେ, ଠିକ୍ ବିପରୀତ ଦିଗରେ ପୁରୁଷମାନଙ୍କ ଆଡ଼କୁ ମୁହଁ କରି ବସିଥିଲେ ମହିଳାମାନେ ଏବଂ ସେମାନଙ୍କ ସବାପଛ ଧାଡ଼ିରେ ଶ୍ରୀମୟୀ । ସ୍ପଷ୍ଟ ଦେଖା ଯାଉଥିଲା । ପ୍ରଦୀପ ଦେଖୁଥିଲେ ଶ୍ରୀମୟୀ ମୋଟେ ଆଖି ଟେକି ଉପରକୁ ଦେଖୁ ନାହାନ୍ତି । କିନ୍ତୁ କାହିଁକି ? କଅଣ ତାଙ୍କର ଦୁଃଖ ? ସେ ତ ଖୁସିଥିଲା ପରି ମନେ ହେଉଚି ।

ଠନ୍ ଠନ୍ କରି ଘଣ୍ଟ ଶବ୍ଦଟିଏ ହେଲା ଏବଂ ମାଇକ୍‌ରୁ ଅତି ଧୀର ସ୍ୱରରେ ବେଦଧ୍ୱନି ପ୍ରସାରିତ ହେବାକୁ ଲାଗିଲା । ସୁବ୍ରତବାବୁ ଦେଖିଲେ ଗୋଟାଏ ବିମୁଗ୍ଧ ପରିବେଶ । ସେ ଦେଖୁଥିଲେ ଗୋଟାଏ ଉଜ୍ଜ୍ୱଳ ଛାୟାମୂର୍ତ୍ତି ଯେମିତି ତାଙ୍କରି ଆଡ଼କୁ ମାଡ଼ି ଆସୁଚି । ଏବଂ ସେଥିରୁ ଗୋଟାଏ ଶୁଭ୍ରାଲୋକ ଚାରିଆଡ଼କୁ ବିଚ୍ଛୁରିତ ହେଇ ଯାଉଚି ।

ସେ ଆଖି ବୁଜିଦେଲେ ଏବଂ ମନେମନେ ସେଇ ମୂର୍ତ୍ତି କଥାହିଁ ଚିନ୍ତା କରିବାକୁ ଲାଗିଲେ । ବେଦମନ୍ତ୍ର ତାଙ୍କୁ ଆହୁରି ସ୍ପଷ୍ଟ ଭାବରେ ଶୁଣାଗଲା । ସେ ଏକ ପ୍ରକାର ଆତ୍ମହରା ହେଇ

ପଢ଼ୁଥିଲେ । ତାଙ୍କର ମନେ ହେଉଥିଲା ସେ ଯେମିତି ଧୀରେ ଧୀରେ ସଂବିତ ହରାଇ ବସୁଛନ୍ତି । କିନ୍ତୁ ସେ ଭାବୁଥିଲେ ଏହା ଏକ ଐଶ୍ୱରିକ ଶକ୍ତି ନ ହେଇ ଆଉ କଅଣ ହେଇ ପାରେ ? ସ୍ୱାମୀଜୀଙ୍କ ଦେହରେ ଦେବାବତରଣ ହେଇ ନଥିଲେ ତାହା ଆଉ କଅଣ ?

ମାଇକରେ ବେଦଧ୍ୱନି ବଂଦ ହେଇଗଲା । ସ୍ୱାମୀଜୀ ଏଥର ଭକ୍ତ ମାନଙ୍କ ଉଦ୍ଦେଶ୍ୟରେ କିଛି କହିବେ । ଧ୍ୟାନମଗ୍ନ ସୁବ୍ରତବାବୁ ଏଥର ଆଖି ଖୋଲିଲେ । ସେ ଦେଖିଲେ ସ୍ୱାମୀଜୀ ତାଙ୍କ ଠାରୁ ବେଶୀ ଦୂରରେ ନୁହେଁ। ଏତେ ପାଖରୁ ତାଙ୍କୁ ଦେଖିବେ ବୋଲି ସେ ଆଶା କରି ନଥିଲେ। ସେ ଗୋଟାଏ ଅପୂର୍ବ ପୁଲକରେ ପୁଲକିତ ହେଇ ଉଠୁଥିଲେ । ସେଇ ପୁଲକିତ ଶରୀରରେ ତାଙ୍କର ଜାତ ହେଉଥିବା ରୋମାଞ୍ଚକୁ ଦେଖି ସେ ଆଶ୍ଚର୍ଯ୍ୟ ହେଉଥିଲେ । ତାଙ୍କର ସେ ଅନନୁଭୂତ ଅନୁଭୂତିଟିକୁ ସେ କଅଣ ବୋଲି କହିବେ ?

ସେ ଦେଖିଲେ ତାଙ୍କ ଆଖି ସ୍ୱାମୀଜୀଙ୍କ ଆଖି ସହିତ ମିଶିଯାଇଚି । ଏ କଅଣ ଦେଖୁଛନ୍ତି ସେ ? ସେ ଆଖି ଦୁଇଟିରୁ ଆଲୋକ ନିର୍ଗତ ହେଉଚି କି ? ସେ ଆଲୋକର ଆକର୍ଷଣ ଅଛି କି ? ସେ ଆଖି ଦୁଇଟି ତାଙ୍କରି ଉପରେ ନିବଦ୍ଧ କି ? ଇସ୍ ତା'ର କି ତେଜ ?

ହଠାତ୍ ତାଙ୍କର ମନେହେଲା । ସେ ଯେମିତି ଏ ଦୁଇଟି ଆଖି ଆଗରୁ କୋଉଠି ଦେଖିଛନ୍ତି । ହଁ ନିଶ୍ଚୟ ଦେଖିଛନ୍ତି । କିନ୍ତୁ କୋଉଠି ? ଗାଁରେ ? କିଏ ଇଏ ? ପୁଣି ତାଙ୍କର ମନେହେଲା ନା, ସେ ହୁଏତ ଭୁଲ୍ ଭାବୁଛନ୍ତି। ପ୍ରଭୁ ତାଙ୍କୁ ହୁଏତ ପରୀକ୍ଷା କରୁଛନ୍ତି । ସେ ନିଜର ଭୁଲ ପାଇଁ କ୍ଷମା ମାଗିବାକୁ ଚିନ୍ତା କଲେ ଏବଂ ସଙ୍ଗେ ସଙ୍ଗେ ଦୁଇ ହାତଯୋଡ଼ି ପକେଇଲେ ।

ସେ ଦେଖିଲେ ତଥାପି ଦୁଇଟି ଆଖି ତାଙ୍କ ଉପରେ ନିବଦ୍ଧ । ସେ ଆଖିର ପ୍ରତ୍ୟେକଟି ଶର ତାଙ୍କ ସର୍ବାଙ୍ଗକୁ ଯେମିତି ଫୋଡ଼ି ପକାଉଚି । ସୁବ୍ରତ ନିଜେ ମଧ୍ୟ ସ୍ୱାମୀଜୀଙ୍କ ଉପରୁ ଆଖି ଖସାଇ ପାରୁନାହାନ୍ତି । ସ୍ୱାମୀଜୀଙ୍କ ଆଖି ଦୁଇଟା ତାଙ୍କୁ ସେ ଦିନର ସେ ମୂଷାର ଆଖି ଭଳି ଦେଖାଗଲା । କିନ୍ତୁ ସେ ଦିନର ସେ ମୂଷାର ଜ୍ୱଳନ୍ତ ଆଖି ଦୁଇଟା ଆଜି ଗୋଟାଏ ନିରୀହ ମୂଷାର ଆଖିପରି ଦେଖାଯାଉଥିଲା । ଏକ ନିସ୍ତେଜ ଓ ନିଷ୍ପ୍ରଭ ଆଖି ପରି ମନେ ହେଉଥିଲା । ପୁଣି ଭାବିଲେ ନା ସେ ଏସବୁ କଅଣ ଭାବୁଛନ୍ତି । ସେ ମନକୁ ଦୃଢ଼ କଲେ ଓ ଉଠିଲେ ଏବଂ ସେ ମୂଷାଟିକୁ ଧରି ଆଶ୍ରମ ବାହାରେ ଥିବା ପ୍ରାକୃତିକ ଓ ଶାନ୍ତ ପରିବେଶରେ ଥିବା ଜଙ୍ଗଲ ଭିତରେ ଛାଡ଼ି ଦେବାକୁ ଆଗେଇ ଆସିଲେ ।

▪ ▪ ▪



ବରିଷ୍ଠ କଥାକାର ଭୂପେନ୍ ମହାପାତ୍ର
ଓଡ଼ିଶାର କେତେଜଣ ପ୍ରଭାବଶାଳୀ ଲେଖକଙ୍କ ମଧ୍ୟରୁ
ଅନ୍ୟତମ ଯାହାଙ୍କ କଥାରେ ଥାଏ ପ୍ରଚୁର ଅନୁଭୂତିର
ଛାପ ଏବଂ ତାହା ହିଁ ଆକୃଷ୍ଟ କରିଥାଏ ପାଠକକୁ ଆହୁରି
ଗହନରୁ ଗହନତର ହେବାପାଇଁ । କଥା ଆରମ୍ଭ ହୋଇଥାଏ
କେତେବେଳେ ଯେମିତି ଜଣାପଡେ ନାହିଁ, ସେମିତି ଜଣାପଡେ
ନାହିଁ କଥା ଶେଷହେବା - ଏହା ହିଁ ହେଉଛି ଭୂପେନୀୟ
କଥାଶୈଳୀ ।